# ସୂଚିପତ୍ର





“ଦାମ୍ପତ୍ୟ କଳହେ ଚୈବ”ର ପ୍ରଥମ ସଂସ୍କରଣ ବହୁଦିନୁ ନିଃଶେଷ ହୋଇଯାଇଥିଲେ ମଧ୍ୟ, ନାନା ଅସୁବିଧାରୁ ଦ୍ୱିତୀୟ ସଂସ୍କରଣ ପ୍ରକାଶରେ ଏତେ ବିଳମ୍ବ ହେଲା । ଏ ସଂସ୍କରଣରେ ଆଉ କେତୋଟି ନୂଆ ଦମ୍ପତିଙ୍କର ପରିଚୟ ମିଳୁଛି ।

ଏ ଗଳ୍ପଗୁଡ଼ିକ ମଧ୍ୟରୁ ଅଧିକାଂଶ ଆଗରୁ ସାମୟିକ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା ।

ସୁସାହିତ୍ୟିକ ଓ ଖ୍ୟାତିସମ୍ପନ୍ନ ଉପନ୍ୟାସଲେଖକ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ଏମ.ଏ.ଙ୍କ ଲିଖିତ ମୁଖବନ୍ଧଟି କ୍ଷୁଦ୍ର ହେଲେ ହେଁ ଲେଖକଙ୍କୁ ଯଥେଷ୍ଟ ଉତ୍ସାହ ଦେଇଅଛି ।

ଗଳ୍ପଗୁଡ଼ିକ ୧୯୪୪ରୁ ୧୯୪୭ ମଧ୍ୟରେ ଲେଖା ହୋଇଥିଲା । ପାଠକ ପାଠିକାମାନେ ଏ କଥାଟାକୁ ଆଗ ମନେ ରଖିବାକୁ ଅନୁରୋଧ ।

**ଲେଖକ**

— — —

# ମୁଖବନ୍ଧ

ହସିବା ସହଜ, ହସେଇବା କଷ୍ଟ । ଆହୁରି କଷ୍ଟ ସେହି ଅସ୍ୱାଭାବିକ ଯୁଗରେ—ଯେତେବେଳେ ସଂକ୍ରାମକ ବ୍ୟର୍ଥତା-ରୋଗରେ ଏକ ଛଟପଟ ତରତର ଅନ୍ୟମନସ୍କ ବ୍ୟସ୍ତତା-ବିକାର ଦେଖାଇ ଲୋକେ ଧାଇଁ ପଳାଉଥାନ୍ତି । ପେଟରେ ଭୋକ, ମନରେ ଘା; ବ୍ୟକ୍ତିତ୍ୱ ଜଳିଲାଗିଛି କାଉଁରିଆ କାଠି ପରି । ତର ନାହିଁ ଗଛତଳେ କାନ ପାରି ବସି ପାନ ଝଙ୍ଗୁ ଝଙ୍ଗୁ ଘାସ ଭିତରେ ଝିଣ୍ଟିକାର ଚୂଟୁରୁ ଚୂଟୁରୁ ଶୁଣିବାକୁ କି ଚୋଠାଗହଳରୁ କାଉରା ବୋବାଳି ଶୁଣୁ ଶୁଣୁ ଭୁଷୁଭୁଷିଆ ପବନ ଆଡ଼କୁ ପିଠି ଡେରି ଦେଇ ଆଖିବୁଜି ମନପବନ ଘୋଡ଼ା ପିଠିରେ ବସିପଡ଼ିବାକୁ । ଆକୃତିରେ ସେହି ମଣିଷଟା ରହିଛି ଅବିକଳ, ସେହି ହାତଗୋଡ଼, ସେହି ମୁହଁ; କିନ୍ତୁ କପାଳଟା କେମିତି ଠାଆଁସିଆ, ଖର; ଆଖି ଦିଟାରେ ବାଲିଝାଇଁ; ଶୁଖିଲା ମୁହଁଟା କୁମି ପରି ହୋଇ ମୋଡ଼ି ହେଉଛି ଏକର ସେକର । ଅସ୍ଥିର ତାର ସ୍ନାୟୁ, ଟଳଟଳ ତାର ଗତି । ମୁଣ୍ଡ ଭିତରେ ଘରପୋଡ଼ର ନିଆଁ, ଦରପୋଡ଼ା କାନ୍ଥର ଦୁଃସ୍ୱପ୍ନ ଆଉ ଆତଙ୍କ । ତାର କବି ଟି: ଏସ୍: ଇଲିଅଟ୍, କାଳିଦାସ ନୁହନ୍ତି ।

ଯେପରି ପ୍ରାଣୀକୁ ଯେ ହସେଇବାକୁ ଆଗଭର ହୁଏ, ସେ ଦୁଃସାହସିକ । ଯେ ପାରେ ହସେଇ, ସେ ଆଶ୍ଚର୍ଯ୍ୟ ।

ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀ ତାଙ୍କର ଏ 'ଦାମ୍ପତ୍ୟ କଳହେ ଚୈବ' ଗଳ୍ପ କେତୋଟିରେ ହସ ଉପୁଜେଇ ପାରିଛନ୍ତି ।

'ବାଦ' 'ବିବାଦ'ର ଅଚଳ ମହାମେରୁ ସନ୍ଧରେ ଯେପରି କି ଏ ଫୁଲଫୁଟା ବଙ୍କାଡ଼ଙ୍କା ଘାଟିବାଟ, ଛପି ଛପି ଦେଖିହୁଏ ସାଧାରଣ ଭିତରେ ଉଦ୍ଭଟ, ଅସାଧାରଣ, ଅସମଞ୍ଜସ—ନାନା ବାଙ୍କରୁ, ନାନା ଚତ୍ୱରରୁ ଚହ୍ଲା ଜୀବନର ନୂଆ ଦୃଶ୍ୟ ଦେଖିଲା ପରି । ହସ ବୁଦ୍ଧି ବର୍ଣ୍ଣରର ଉପାସ୍ୟଭଙ୍ଗୀରେ କରେଖା ଅବସ୍ଥା ଓ ଯାହା ସରଳ ଲଗେ, ତାହାର ଗଠନପ୍ରଣାଳୀରେ ହିଁ ଯେତେ କଳାଗୃଭୁଗି । ଏ ଗଳ୍ପଗୁଡ଼ିକର ଗୋଟିଏ ପଛଭୂମି—ଆକାଂକ୍ଷାମୟ ବ୍ୟକ୍ତିଜୀବନର ଚରମ ବ୍ୟର୍ଥତା । ସେ ବ୍ୟର୍ଥତା ଏଠି ପାଠକକୁ ପାଗଳ କରେ ନାହିଁ, ହସେଇବାକୁ କୁତୁକୁତୁ କରେ । ପାତ୍ରପାତ୍ରୀଙ୍କ ଉପରେ ନିଦାନ ବ୍ୟର୍ଥତାର ଗ୍ଲାଇ ପଡ଼ି କାହା ଦେହରୁ ଫାଳେ ନ ଥିଲା ପରି ଦିଶେ, କାହାର ଚଳୁଡ଼ାଏ । କିଏ ବଙ୍କା ଦିଶେ, କିଏ କେମ୍ପା, ଅଥଚ ଆପଣା ହାତରେ ସମସ୍ତେ ଆପେ ଚଉଦପା । ସେମାନେ ଯେତେବେଳେ ବୁଦ୍ଧି ଖଟାଇ କୌଶଳ ଖଞ୍ଜି ଯୋଜନା ଗଢ଼ି ଅଣ୍ଡାଭିଡ଼ ଲାଗିପଡ଼ନ୍ତି, ସେତେବେଳେ ଉହାଡ଼ରେ ଥାଇ କାଳ ହସେ, ଆଉ ହସେ ସମାଲୋଚକ । ତମ ଭାଙ୍ଗେ, ପଣ ତୁଟେ, ଆବେଗ ଯାଏ ଫସରଫାଟି । ସବୁ ଅଭିନବ ଗୁଡ଼ିଦେଇ ବ୍ୟକ୍ତି ହୁଏ ଗୋଟୁଗୋଠର ପଥିକ । ଏ ଗଳ୍ପମାନଙ୍କରେ ପ୍ରଚ୍ଛନ୍ନ ରହିଛି ଏହି ଦର୍ଶନ, ତାହା ହିଁ ଏଠି ହସର ଉପାଦାନ ଯୋଗେଇଛି । ଏଠି ହସର ଆଉ ଏକ ଉପାଦାନ,—ଯୌନବିକାରର ଛଦ୍ମବେଶ; କେତେବେଳେ କନହ, କେତେବେଳେ ଅସ୍ୱାଭାବିକ ସ୍ନେହପ୍ରବଣତା, କେତେବେଳେ ରୁକ୍ଷତା, କେତେବେଳେ ଗିଜମାତି-ଚର୍ଚ୍ଚା; ବିଭିନ୍ନ ପାତ୍ରରେ ତାର ବିଭିନ୍ନ ରୂପ । ମନସ୍ତତ୍ତ୍ୱର ଏ ବିନ୍ୟାସ ଦ୍ୱାରା ଲେଖକ ସାଧାରଣ ଜୀବନକୁ ବୁଝାଇବାକୁ ସାହାଯ୍ୟ କରିଛନ୍ତି । ସାହିପଡ଼ିଶାରେ ସବୁଦିନଆ ଘରକରଣାର ଆଖିଏସବି

ଦେଶ ଭିତରେ ହସିବାପାଇଁ ଏତେ ଉପାଦାନ ରହିଛି, ଏ ନବଡ଼ମ୍ବର ଗଳ୍ପଗୁଡ଼ିକରେ ତୀକ୍ଷ୍ଣ ବଗ୍ନୂରବନ୍ତ ମନ ସାହାଯ୍ୟରେ କୌତବ ଚର ତାହାର ପରିଚୟ ହିଁ ଦିଆହୋଇଛି । ଲୋକଙ୍କ ସଙ୍ଗେ ସ୍ୱର ମିଶାଇ ମୁଁ ବି ତେଣୁ କହିବି—"ହାମ୍ ବଜାର୍ କି ଜେ ।"

ଶ୍ରୀ ଗୋପୀନାଥ ମହାନ୍ତି
୧୪।୩।୫୩

———

# ଦାମ୍ପତ୍ୟ କଳହେ ଚୈବ

ରମାର ବାରଂବାର ତାଗିଦା ଓ ଅନୁରୋଧରେ ଶଙ୍କର ଘରକୁ ନ ଯାଇ ମୁଁ ରହିପାରିଲି ନାହିଁ । ତାଙ୍କ ଘରକୁ ଗଲେ ନାନା ପ୍ରକାର ମୁଖ-ରୁଚିକର, ଜିହ୍ୱା-ପ୍ରୀତିକର ଖାଦ୍ୟପେୟର ବ୍ୟବସ୍ଥା ବରାବର ହୋଇଥାଏ । ରବିବାରର ଉଦୁଉଦିଆ ଦିପହରଟାରେ ସେଠାକୁ ଯିବାରେ ସେ ପ୍ରବଳ ଲୋଭ ଯେ ମୋ ଗୋଡ଼ ଦୁଇଟାକୁ ଟାଣି ନ ନେଇଥିଲା, ଏହା ସ୍ୱୀକାର ନ କଲେ ମୁଁ ମିଛୁଆ ହୋଇଯିବି ।

ଶଙ୍କରଂ ସହିତ ମୋର ବନ୍ଧୁତା ବହୁ ଦିନରୁ । ତାହା ପୁଣି ଘଷିମାଜି ଦୋରସ୍ତ ହୋଇଯାଇଛି ଏବେ ତିନି ବର୍ଷ ତଳେ— ମୋର ଗୃହିଣୀଙ୍କ ଦୂର ସମ୍ପର୍କୀୟା କୌଣସି ଭଉଣୀ ଲକ୍ଷ୍ମୀଙ୍କୁ ବିବାହ କରିବା ଫଳରେ । ଅବଶ୍ୟ ବିବାହର ପରେ ମୁଁ ଲକ୍ଷ୍ମୀ ଦେବୀଙ୍କ ପରିଚୟ ପାଇଲି । ତଥାପି ଶଙ୍କର ଓ ଲକ୍ଷ୍ମୀ ଉଭୟଙ୍କର ବିଶ୍ୱାସ ଯେ, ଏ ବିବାହରେ ମୋର ହାତ ଥିଲା ଷୋଳପଣ; କାରଣ ଶଙ୍କର ମୋର ବାଲ୍ୟବନ୍ଧୁ, ଲକ୍ଷ୍ମୀ ମୋର ··· ।

ତାଙ୍କର ଏ ଅଗାଧ ବିଶ୍ୱାସ ଫଳରେ ମୋର କୌଣସି କ୍ଷତି ହୋଇ ନାହିଁ; ବରଂ ଲାଭ ହୋଇଛି ଢେର ବେଶୀ । ଦୁହିଁଙ୍କ ପାଖରେ ମୋର ଆଦର ଖୁବ ବଢ଼ିଯାଇଛି । ସପ୍ତାହରେ ଅନ୍ତତଃ

ଦୁଇ ତିନ ଥର ତାଙ୍କ ଘରକୁ ମୋତେ ନିମନ୍ତ୍ରଣ ରକ୍ଷା କରିବାକୁ ଯିବାକୁ ପଡ଼ିଛି । ଏପରି କି ପ୍ରତିଯୋଗିତା କରି ଉଭୟେ ମୋତେ ଭଲ ଭଲ ଖାଦ୍ୟ ଖୁଆଇଛନ୍ତି । କେଉଁଠା ଦାମିକା ସୌଖୀନ ଜିନିଷ ଯେ ଉପହାର ନ ପାଇଛି, ତା ନୁହେ ।

ବିବାହ ପରେ ଶଙ୍କର ଲକ୍ଷ୍ମୀଙ୍କୁ ଆଣି କଟକରେ ରହିଛି । ସିଭିଲ୍ ସପ୍ଲାଇଜ ଅଫିସରେ ସେ ଜଣେ ବଡ଼ ହାକିମ, ମୋଟା ଦରମା ପାଏ, ଖାତିର୍ ମଧ୍ୟ ତାର ପଦାରେ ବେଶ୍ । ଘରେ ଲକ୍ଷ୍ମୀ ଦେବୀ ଓ ସ୍ୱାମୀ ଶଙ୍କର ବ୍ୟତୀତ ଆଉ କେହି ନାହାନ୍ତି; କାରଣ, ଦର୍ଶନଶାସ୍ତ୍ରରେ ଏମ୍. ଏ. ଶଙ୍କର ସର୍ବଦା ଗୃହେ ନିର୍ଜନତା ।

ମୁଁ ଏତେ ବଡ଼ ହାକିମଙ୍କ ବନ୍ଧୁ ହେଲେ ମଧ୍ୟ ତିରିଶ ଟଙ୍କିଆ କିରାଣୀ; ଚେଣ୍ଡୁ ହୋଟେଲ ହିଁ ମୋର ଆଶ୍ରୟସ୍ଥଳ । ହୋଟେଲର ପେଜମିଶା ଡାଲି, ଘାସମିଶା ଚାଉଳ ଖାଇ ଖାଇ ଅରୁଚି ଧରିଥିବା ପାଟିକୁ ଟିକିଏ ବଦଳାଇ ଆଣିବାପାଇଁ ମୁଁ ଶଙ୍କର ଆଉ ଲକ୍ଷ୍ମୀଙ୍କ ନିମନ୍ତ୍ରଣକୁ ଆଗ୍ରହର ସହିତ ଗ୍ରହଣ କରିଥାଏଁ ।

ଆଜି ସେହିପରି କିଛି ଖାଦ୍ୟପେୟର ବ୍ୟବସ୍ଥା ହୋଇଛି— ଏଇ ଆଶା କରି ଜିଭରୁ ବୋହି ପଡ଼ୁଥିବା ତରଳ ପଦାର୍ଥ ବିଶେଷକୁ ଢୋକି ଢୋକି ତାଙ୍କ ଘରକୁ ଚାଲିଲି ।

ଯାଇ ଦେଖିଲି, ଖାଇବା ପିଇବାର ବ୍ୟବସ୍ଥା ତ କିଛି ନାହିଁ, ବରଂ ଗୋଟାଏ କିଛି ଗଣ୍ଡଗୋଳିଆ ଭାବ ଚାରିଆଡ଼େ ଖେଳି-ବୁଲୁଛି—ପ୍ରବଳ ଝଡ଼ ଘରଦ୍ୱାର ଗଛଲତା ଭାଙ୍ଗି ବହିଗଲା ପରେ ଯେ ଅବସ୍ଥା ହୋଇଥାଏ ।

ଶଙ୍କର ମୁହଁଟାକୁ ଅଥାରହାଣ୍ଡି ପରି କରି ବସି କ୍ଷୋଭ ଲଗାଉଛି ! ମୋତେ ଦେଖିପକାଇଲା କ୍ଷଣି କହିଲା, "ବସ, ବସ, ଚା ହୋଇଯିବା ଉପରେ । ଗୋଟାଏ କପ୍ ଅନ୍ତତଃ ଚା ଖାଇ ଯା ।"

ମୁଁ ଶଙ୍କର ପାଖରେ ତଳେ ବସି ପଡ଼ିଥିଲି; ସେ ଘରୁ ଲକ୍ଷ୍ମୀ ଦେବୀ ଦମ୍‌ଦମ୍ ହୋଇ ଚାଲିଆସି କହିଲେ, "ନା, ଏ ଖରାବେଳେ ତୁମେ ଚା ଫା ଖାଅ ନାହିଁ । ମୁଁ ଥଣ୍ଡା ସରବତ୍ ଏଇଲାଗେ କରି ଦେଉଛି ।"

ମୁଁ ଦୁହିଁଙ୍କ ମୁହଁକୁ ଥରେ ଲେଖାଏଁ ଚାହିଁ ଶୁଖିଲା ହସ ମୁହଁରେ ଫୁଟାଇ କହିଲି, "ମୋତେ ଦୁଇଟାଯାକ ଖୁବ୍ ଭଲ ଲାଗେ । ଗରମ ଗରମ ଚା ସଙ୍ଗରେ ଥଣ୍ଡା ସରବତ୍ ମିଶାଇ ଖାଇଲେ ଖୁବ୍ ଉପକାର ହୁଏ—ଯେପରି ନେଗେଟିଭ୍ ଆଉ ପଜେଟିଭ୍ । ହୋମିଓପାଥିର ମୂଳ ମନ୍ତ୍ର ତ ଯାଇ ସେଇଠି ।"

ଠଉରାଇ ନେଲି ଯେ, ଦୁହିଙ୍କ ଭିତରେ ଗୋଟାଏ ମସ୍ତବଡ଼ କନ୍ଦଳ ସୃଷ୍ଟି ହୋଇଛି; ତେଣୁ ଶଙ୍କରର ଚା'ଟା ଲକ୍ଷ୍ମୀଙ୍କ ପକ୍ଷରେ ବିଷ, ଲକ୍ଷ୍ମୀଙ୍କ ଦହି ସରବତ୍ ଶଙ୍କର ପକ୍ଷରେ ହଳାହଳ ।

ମୁଁ ଆଗରୁ ଜାଣିଥିଲି, ଲକ୍ଷ୍ମୀ ଆଉ ଶଙ୍କର ଭିତରେ ମଝିରେ ମଝିରେ ମନ ଅମେଳ ହୁଏ, ଦିନେ ଦୁଇ ଦିନ କଥାବାର୍ତ୍ତା ବନ୍ଦ ହୁଏ । ଅନେକ ସମୟରେ ମୋତେ ହିଁ ଯାଇ ମଧ୍ୟସ୍ଥତା କରିବାକୁ ପଡ଼େ । ଶଙ୍କରକୁ ଲକ୍ଷ୍ମୀ ଦେବୀଙ୍କ ଶପଥ ଦେଇ, ଲକ୍ଷ୍ମୀଙ୍କୁ ଶଙ୍କରର ରାଣ ପକାଇ ମୁଁ ତାଙ୍କୁ ଖୁଆଏଁ, କଳଗୋଳ ତୁଟାଏଁ ।

ମାତ୍ର ଆଜିର କଳି ସେସବୁକୁ ଟପି ଯାଇଛି । ଶଙ୍କର ମୋତେ ଚାହିଁ କହିଲା, "ଜାଣିଲୁ ଭାଇ, ମଣିଷ ବାହା ହୋଇ ଏମିତି

ଝକ୍‌ମାର କରେ, ତା ମୁଁ ଜାଣି ନ ଥିଲି । ମୁଁ କାନ ମୋଡ଼ି ହେଉଛି, ଆଉ ଥରେ ହେଲେ ମୁଁ ଯେପରି ସେ ଭୁଲ ନ କରେଁ ।"

ଲକ୍ଷ୍ମୀ ବୋଧହୁଏ ଦୁଆରମୁହଁ ପାଖରେ ଠିଆ ହୋଇଥିଲେ । ସେ ଚମତମ ହୋଇ ଘରଭିତରକୁ ପଶି ଆସି କହିଲେ, "ତୁମ ପରି ପୁରୁଷକୁ ମଣିଷ ପୁଣି ବାହା ହେବ ? ପୁରୁଷ ନୁହଁ ତ ରାକ୍ଷସ ତୁମେ; ମଣିଷଖିଆ ରାକ୍ଷସ । ତୁମେ ଏକା କାହିଁକି, ପୁରୁଷ ଜାତିଟା ହିଁ ସ୍ୱାର୍ଥପର, ନିଷ୍ଠୁର । ମୁଁ ଏହା ଜାଣିଥିଲେ, କେବେ ହେଲେ ପୁରୁଷଙ୍କୁ ବାହା ହୋଇ ନ ଥାନ୍ତି । ଏବେ ନିୟମ କରୁଛି, ଆଉ ଜନେ ହେଲେ ତୁମ ପରି ପୁରୁଷର ହାତ ଧରିବ ନାହିଁ ।"

ମୁଁ ଦୁଇପାଖ ସମ୍ଭାଳି ନେବା ପାଇଁ କହିଲି, "ଆଚ୍ଛା ଥୟ ଧର । ଶଙ୍କର ଟିକିଏ ଏକବାଗିଆ ଲୋକ । ତେବେ କଥାଟା କଅଣ ଥରେ ହେଲେ କୁହ ।"

ଦୁହିଁଙ୍କ ଆଡ଼କୁ ଦୁଇଟାଯାକ କାନ ଠିଆ କରି ଏକାବେଳକେ ମୁଁ କଳର ଯେଉଁ ତତ୍ତ୍ୱ ଆବିଷ୍କାର କଲି, ତାର ସାର କଥା ହେଉଛି, କାଲି ଦୁହେଁ ସିନେମା ଦେଖି ଯାଇ ଏ ଗଣ୍ଡଗୋଳରେ ପଡ଼ିଛନ୍ତି । ଲକ୍ଷ୍ମୀଙ୍କ ମତରେ ଅଶୋକକୁମାରର ଅଭିନୟ ସର୍ବଶ୍ରେଷ୍ଠ, ଶଙ୍କର ମତରେ ମମତାଜ ହିଁ ନାଟକର ଶ୍ରେଷ୍ଠ ଅଭିନେତ୍ରୀ ।

ବାସ୍ତବିକ, ଏଥିରେ କୁରୁକ୍ଷେତ୍ର ବାଧିବାର କଥା !

ନିଜ ମତ ପ୍ରକାଶ କରୁ କରୁ ଶଙ୍କର ଗର୍ଜିଉଠି କହିଲା, "ମୁଁ କଅଣ କୁଣ୍ଡାଦେଇ ଏମ୍‌.ଏ. ପଢ଼ିଥିଲି ? ମୋର କଅଣ ଏତିକି ବୁଝିବାର କ୍ଷମତା ନାହିଁ ?"

ଏ ପାଖରୁ ଲକ୍ଷ୍ମୀଙ୍କ ସ୍ୱର ଶଙ୍କର ସ୍ୱରକୁ ଚପିଗଲା, "ନାଇଁ, ମୁଇଁ ତ କେବଳ ଭୂଷି ଦେଇ ଏମ୍. ଇ. ପଢ଼ିଥିଲି ।"

ଲକ୍ଷ୍ମୀ ଦେବୀ ଏମ୍. ଇ. ପରେ ଆଉ ଚାରି ବର୍ଷ ଗାର୍ଲସ୍କୁଲକୁ ଦଉଡ଼ିଛନ୍ତି, ତା ମୁଁ ଜାଣେ । ତେବେ ଏପରି ଛଳେଇ କହିବାର ଉଦ୍ଦେଶ୍ୟ ହେଉଛି, ଶଙ୍କର ଏମ୍. ଏ. ଠାରେ ହିଁ ରହିଛି, ଆଉ ଆଗକୁ ଯାଇ ନାହିଁ । ମାତ୍ର ଲକ୍ଷ୍ମୀ ଏମ୍. ଇ. ପରେ ଆଉ ଚାରି ବର୍ଷର ପାଠ ଉଦରସାତ୍ କରିଛନ୍ତି ।

ମୋତେ ଶିଖଣ୍ଡୀ କରି ଦୁହିଁଙ୍କ ମଧ୍ୟରେ ଆଚ୍ଛା ରକମ କୁରୁକ୍ଷେତ୍ର ବାଧିଗଲା । ଶେଷକୁ ରାଗରେ ଲକ୍ଷ୍ମୀ କହିଉଠିଲେ, "ମୁଁ ଆଜି ଭାଇଙ୍କ ଘରକୁ ଚାଲିଯାଉଛି । ଏପରି ପୁରୁଷର ମୁହଁ ଚାହିଁବି ନାହିଁ । ମୁଁ ଯେବେ ଆଉ ତୁମ ଘରକୁ ଆସେ, ତେବେ ମୁଁ ସ୍ତ୍ରୀ ନୁହେଁ ।"

ଶଙ୍କର ମଧ୍ୟ ଛାଡ଼ିବାର ନୁହେ । ସେ ସମାନ ଭାବରେ କହିଗଲା, "ମୁଁ ଯଦି ତୁମକୁ ଆଣିବାକୁ ଯାଏ, ତେବେ ମୁଁ ପୁରୁଷ ନୁହେଁ ।"

ଲକ୍ଷ୍ମୀଙ୍କ ଭାଇ ପୁରୀର ବଡ଼ ହାକିମଙ୍କ ଭିତରୁ ଜଣେ । ମୋର ସବୁ ପ୍ରକାର କାକୁତି ମିନତି, ବାଧା ସତ୍ତ୍ୱେ ଲକ୍ଷ୍ମୀ ଦେବୀ ରାମକୁ ହାତରେ ଧରି ଷ୍ଟେସନ ଅଭିମୁଖରେ ଗତି କଲେ ।

ମୋ ମନ ବଡ଼ ଖରାପ ହୋଇଗଲା । ନିରାଶ ହୃଦୟରେ ଚା'କ ସର୍‌ବତ କରୁଛି ନ ପାଇ ମୁଁ ହୋଟେଲକୁ ଫେରିଲି । ଘଟଣାଟା ଏତେ ଦୂରକୁ ଉଠିଯିବ ବୋଲି ମୁଁ କଦାପି ଭାବି ନ ଥିଲି ।

ଶଙ୍କର ବର୍ତ୍ତମାନ ତା ବସାଟିରେ ଏକା । ନଡ଼-ଖିଅର ଗାଲରେ ତାର ଜଙ୍ଗଲ ପରି ଦାଢ଼ି । ଅନେକ ସମୟରେ ତା ସହିତ ଦେଖାସାକ୍ଷାତ ହୁଏ, ଏଣୁତେଣୁ କଥା ମଧ୍ୟ ପଡ଼େ । କିନ୍ତୁ ଭୁଲରେ ସୁଦ୍ଧା ସେ ଲକ୍ଷ୍ମୀଙ୍କ କଥା କେବେ ପକାଏ ନାହିଁ । ମୁଁ ସେ କଥା ଉଠାଇଲା ବେଳକୁ ସେ କଥାର ମୋଡ଼ ବୁଲେଇ ଦିଏ । ଦୁନିଆ ପ୍ରତି ସେ ବର୍ତ୍ତମାନ ବୀତଶ୍ରଦ୍ଧ । ଉପଯୁକ୍ତ ଗୁରୁ ପାଇଲେ ସେ ବାବାଜୀ ହୋଇଯିବ ବୋଲି ଦୃଢ଼ସଂକଳ୍ପ କରିଛି ।

ମାସକ ପରେ ପୁଣି ଏକ ରବିବାର । ଉଦୁଉଦିଆ ଦିପହରେ ବାମା ଡାକିବାକୁ ଆସିଲା । ତା ସାଙ୍ଗେ ସାଙ୍ଗେ ଶଙ୍କର ଘରେ ଯାଇ ପହଞ୍ଚି ଦେଖିଲି, ଶଙ୍କର ଘରେ ନାହିଁ । ଲକ୍ଷ୍ମୀ ଦେବୀ ସେହିକ୍ଷଣିକା ଷ୍ଟେସନରୁ ଆସି ଘରେ ପାଦ ଦେଉଛନ୍ତି । ମୋତେ ଦେଖିଲା ମାତ୍ରକେ କହିଉଠିଲେ, "ତୁମ ପୁରୁଷ ଜାତିଟା କଅଣ ଏଡ଼େ ନିଷ୍ଠୁର ? ତୁମକୁ ମଣିଷ କରି ବିଧାତା କାହିଁକି ଜନ୍ମ ଦେଇଥିଲଟି ? ଦୟା ମାୟା କଅଣ ତୁମଠାରେ ଟିକେ ହେଲେ ନାହିଁ ?"

ହଠାତ୍ ଏତେଗୁଡ଼ାଏ ଗୁରୁତର ଅଭିଯୋଗର କାରଣ ମୁଁ ଖୋଜି ପାଇଲି ନାହିଁ । ପୁଣି ସେ କହିଲେ, "ମୁଁ ଖବର ପାଇଲି, ତାଙ୍କ ମନ ଭାରି ଖରାପ । ତୁମେ ମୋତେ ଏ କଥା ଟିକିଏ ହେଲେ ତ ଜଣାଇ ନାହିଁ । ସେ ତୁମର ବନ୍ଧୁ ପରା କୁଆଡ଼େ ? ମନେ କର, ସେହି ମନ ଖରାପ ହେତୁ ସେ ଯଦି ନଈକୁ ଡେଇଁ ପଡ଼ିଥାନ୍ତେ; କି ଅଫିମ ଖାଇ ଦେଇଥାନ୍ତେ ? ନାହିଁ ଯଦି ଭାବି ଭାବି ତାଙ୍କୁ ଜର ହୋଇଥାନ୍ତା ? ଆଜିକାଲି ପୁଣି ଯେମିତି ବସନ୍ତ, ଜର ହେଲେ ବସନ୍ତ ହେବାକୁ କେତେ ଡେରି ? ସେତେବେଳେ ତାଙ୍କ ପାଖରେ

କିଏ ଥିଲଟି କି ? ତୁମେ ଖବର ଦେଇଥିଲେ ମୁଁ ତ କେଉଁ ଦିନୁ ଆସି ତାଙ୍କର ସେବା ଶୁଶ୍ରୂଷା କରିଥାନ୍ତି । ଏଇ ବୁଦ୍ଧିରୁ ତୁମେ ପୁରୁଷ ଜାତି ସ୍ତ୍ରୀଙ୍କୁ ବାର ପର !"

ମୁଁ ଦୋଷୀଙ୍କ ପରି ଅନୁତପ୍ତ ସ୍ୱରରେ କହିଲି,, "ମୁଁ କିଅଣ ଜାଣିଥିଲି ଯେ, ସ୍ତ୍ରୀ ଲୋକେ ଯାହା 'ନାହିଁ' ବୋଲି କହିବେ, ତାର ଅର୍ଥ ହେବ 'ହଁ' ।"

ସାଙ୍ଗେ ସାଙ୍ଗେ ଉତ୍ତର ମିଳିଲା, "ହେଲେ, ତୁମ ପୁରୁଷ ଜାତି ପରି ଅବିଶ୍ୱାସୀ ସ୍ତ୍ରୀ ଜାତି ନୁହନ୍ତି । ତୁମେ ମୁହଁରେ ଯାହା 'ନାହିଁ' ବୋଲି କହିବ, ସେଇଟା ତୁମ ପେଟଭିତରେ ଯେ 'ହଁ' ।"

ଆଜିକାଲି ସେମାନଙ୍କର ସିନେମା ଦେଖା ବନ୍ଦ; କିନ୍ତୁ ମୋର ଗୃ କ. ସର୍‌ବତ ବନ୍ଦ ହୋଇ ନାହିଁ ।

---

# ପୁସି ଦୂତ

ମୋର ଆଉ କିଛି ଗୁଣ ଥାଉ ନ ଥାଉ, ପଶୁ ପକ୍ଷୀଙ୍କ ଶବ୍ଦ ଅବିକଳ ଅନୁକରଣ କରି ବୋବାଇବା ଗୁଣଟା ମୁଁ ହାସଲ କରିଥିଲି ପୂରା ଷୋଳପଣ । ସେହି କାରଣରୁ ପିଲାଦିନେ ସ୍କୁଲରେ ପଢ଼ିବା ସମୟରେ ସାଙ୍ଗ ପିଲା ତଥା ଶିକ୍ଷକମାନଙ୍କଠାରୁ ଆରମ୍ଭ କରି କର୍ମକ୍ଷେତ୍ରରେ ସହକର୍ମୀ ତଥା ଉଚ୍ଚଶ୍ରେଣୀ ହାକିମ ବିଶେଷତଃ ସେମାନଙ୍କ ଅନ୍ଦରମହଲରେ ମୋର ଆଦର ଥିଲା ସବୁଠାରୁ ବେଶୀ । ଘୋଡ଼ା, ହାତୀ, ବିଲୁଆ, ବିଲେଇ, ମାଙ୍କଡ଼, କୁକୁର, କୁଆ, ଶୁଆ ଇତ୍ୟାଦି ସବୁ ଜନ୍ତୁଙ୍କ ଶବ୍ଦ ମୁଁ ଖୁବ୍ ନିପୁଣତାର ସହିତ ଅନୁକରଣ କରି ବୋବାଇ ପାରୁଥିଲି । ସେଥିପାଇଁ ଅନେକଙ୍କର ହିଂସାର ପାତ୍ର ମଧ୍ୟ ହୋଇପଡ଼ୁଥିଲି ।

ପଢ଼ିବା ସମୟରେ ଆଇ· ସି· ଏସ· ଠାରୁ ଆରମ୍ଭ କରି ପୁଲିସ ସବ୍‌ଇନସପେକ୍‌ଟର ପର୍ଯ୍ୟନ୍ତ କେତେ ରକମ ଚାକିରିଆ ହେବାର ସ୍ୱପ୍ନ ଦେଖି ଦେଖି କଳ୍ପନାରେ ବିଭୋର ଥିଲେ ମଧ୍ୟ ବିଶ୍ୱବିଦ୍ୟାଳୟର ମାଟ୍ରିକୁ୍ୟଲେଶନ ମେଘନାଦ ପାଚେରିମୂଳରେ ଯେତେବେଳେ ମୁହଁ ମାଡ଼ି ଆଣ୍ଠୋଇ ପଡ଼ିଲି, ସେତେବେଳେ ଜାଣିଲି ଯେ, ମୋର ଜୀବନ କେବଳ ପନ୍ଦରଟି ଟଙ୍କା । ସେହି ପନ୍ଦର ଟଙ୍କା ଆଶାରେ ଘୂରି ଘୂରି ବହୁତ କଷ୍ଟରେ ଯାଇ ଟାଉନହଲରେ ଶ୍ରୀମନ୍ତଙ୍କ ବଡ଼ ଭାଇଙ୍କ ସୁପାରିଶରେ ( ଭଗବାନ୍ ତାଙ୍କୁ ଦୀର୍ଘାୟୁ କରନ୍ତୁ ) ଟିକିଏ ସ୍ଥାନ ପାଇଲି । ସେତେବେଳେ ଶ୍ରୀମନ୍ତଙ୍କ ଭାଗ୍ୟକୁ, ଆଉ ମୋର ସ୍ୱପ୍ନ-ବିଳାସକୁ ଧନ୍ୟବାଦ ନ ଦେଇ ରହିପାରିଲି ନାହିଁ ।

ମୋର ବିଭାଘର ହୋଇଯାଇଛି ପ୍ରାୟ ପାଞ୍ଚ ବର୍ଷ ହେବ । ଏହା ମଧ୍ୟରେ ଶ୍ରୀମତୀ ଅଶାନ୍ତ ( ମୋ ସହଧର୍ମିଣୀ )ଙ୍କ ସହିତ ମୁଁ ନିଗୂଢ଼ ପ୍ରେମରଜ୍ଜୁରେ ଛନ୍ଦାଛନ୍ଦି ହୋଇପଡ଼ିଛି । ଅଶାନ୍ତ ନାଁ ଶୁଣି ନାକ ଟେକିବା ଦରକାର ନାହିଁ । ଅବଶ୍ୟ ଗୋଟାଏ ଅତି ସୁନ୍ଦର ରସରସିଆ ଆଧୁନିକ ଉପନ୍ୟାସିଆ ନାଁ ତାଙ୍କର ଅଛି । ସେ କୁଆଡ଼େ ଯେତେବେଳେ ନିତାନ୍ତ ପିଲା, ସେତେବେଳେ ମୋ ବଡ଼ ବନ୍ଧୁ ଅର୍ଥାତ୍ ତାଙ୍କ ବଡ଼ ଭାଇ ପ୍ରବି ମାନଙ୍କରେ ଜଣେ କବି, ଲେଖକ ଆଉ ଦାର୍ଶନିକ । ଏହାଙ୍କ ଅନବରତ କ୍ରନ୍ଦନରେ ତାଙ୍କ କବିତା ଲେଖିବା ଓ ଚିନ୍ତା କରିବାରେ ବାଧା ପଡ଼ିବାରୁ ସେ ଶାନ୍ତି ନ ପାଇ କୁଆଡ଼େ ଅଶାନ୍ତ ନାମଟା ଦେଇଥିଲେ । ସହରମାନଙ୍କରେ ଗଉଡ଼ ବିକୁଥିବା ଦୁଧକୁ ପାଣି ଚିପିଗଲା ପରି ତାଙ୍କ ଅଶାନ୍ତ ନାମରେ ଅସଲ ନାମଟା ଲୁଚିଗଲା ଏବଂ ସେ ଅଶାନ୍ତ କବି ଓ ଦାର୍ଶନିକଙ୍କୁ ଶାନ୍ତି ଦେଉ ନ ଥିଲେ ମଧ୍ଯ ମୋ ଶାନ୍ତିର ଚିରସହଚର ହୋଇଥିଲେ ।

ପାଞ୍ଚ ବର୍ଷ ହେଲା ଆମ ଦାମ୍ପତ୍ୟଜୀବନ ଗୁଡ଼ ଘିଅ ପରି ମଧୁରଭାବରେ ଚାଲି ଆସିଥିଲେ ବି ମନଭିତରେ ଗୋଟାଏ ଖୁଣ୍ଟା ରହିଯାଇଛି । ଏତେ ନିଗୂଢ଼ ପ୍ରେମର ଫଳ ତ ଏପର୍ଯ୍ୟନ୍ତ କିଛି ମିଳିଲା ନାହିଁ । ଗୋଟିଏ ଗୁଲୁଗୁଲିଆ, ଫୁଲୁକାଗାଲିଆ ଗୋରା ତକତକ୍ ପିଲା ପାଇବା ପାଇଁ ଶ୍ରୀମତୀ ଯେପରି ବ୍ୟସ୍ତ ହୋଇଉଠିଲେ, ମୁଁ ବି ସେମିତି: ଅଥୟ ହୋଇପଡ଼ିଲି । ସବୁଠାରୁ ବେଶୀ ବିଚଳିତ ହୋଇପଡ଼ିଲେ ଭାଉଜବୋଉ ।

× × × ×

ଯାହା ହେଉ, ମୋର ପ୍ରବଳ ଆକାଂକ୍ଷା, ଶ୍ରୀମତୀଙ୍କ ଏକାନ୍ତ ଉତ୍କଣ୍ଠା, ପରିଶେଷରେ ଭାଉଜବୋଉଙ୍କ ବିଶେଷ ଉଦ୍ୟମ

ଫଳରେ ନଅଟ ମଫସଲ ଗାଁରୁ ଶ୍ରୀମତୀଙ୍କୁ ମୁଁ କାର୍ଯ୍ୟକ୍ଷେତ୍ରକୁ ଆଣିଛି; ଏ ସୁଦୂର ଲୁହାଗଡ଼ା ସହରର ଲୁହା ପରି ନୀରସ କର୍ମମୟ ଜୀବନରେ ମୋର ସରସତା ଉଚ୍ଛୁଳ ଉଠିଛି । ଗୃହପାଖ ପାଚେରୀଘେରା ଅତି କ୍ଷୁଦ୍ର ଅଗଣାଟିରେ ଆମେ ଦୁହେଁ ହୋଇ-ଉଠିଛୁଁ ରାଜାରାଣୀ; ଘରଟିକୁ ନନ୍ଦନକାନନ କରି ତୋଳିଛୁଁ !

କୋଉ ମିଳନର ଆବେଗରେ କେତେ ଦିନ ମଧୁମୟ ଜୀବନ କଟିଗଲା । ତା ପରେ ମୋ ଅନୁପସ୍ଥିତି ସମୟଟା ଶ୍ରୀମତୀଙ୍କୁ କ୍ରମେ ବାଧିଲା । ମୋର ଅଫିସ ସମୟ ଦଶଟାରୁ ପାଞ୍ଚଟା । ସେ ବେଳତକ ସେ ଏକୁଟିଆ କଟାଇବେ କିପରି ?

କିଛି କାମ ନାହିଁ କି କଥାବାର୍ତ୍ତା ହସଖୁସି ହେବା ପାଇଁ ପାଖରେ ଜଣେ କେହି ନାହିଁ । କେତେ ବା କେତେ ଦିନ କଟିବ ? ଶେଷକୁ ଅନ୍ୟ ଉପାୟ ନ ପାଇ ସେ କୁଆଡ଼ୁ ସଂଗ୍ରହ କରିନେଲେ ତାଙ୍କର ଗୋଟିଏ ସାଥୀ—ତାଙ୍କ ସହିତ ହସିବା ପାଇଁ, ଖେଳିବା ପାଇଁ, ତାଙ୍କ ସୁଖଦୁଃଖରେ ଭାଗୀ ହେବା ପାଇଁ । ସେ ଆଉ କେହି ନୁହେଁ, ଗୋଟିଏ ଚିକ୍କଣ ଧଳା ଆଉ ନରମ କଉତୁକିଆ ପୁସିଛୁଆ ।

ପ୍ରଥମ ଦିନ ପୁସିଛୁଆଟିକୁ ଦେଖି ମୋର ମଧ୍ୟ ଆନନ୍ଦ ଘର ଧରିଲା ନାହିଁ । ଅତି ଶରଧାରେ ଉଭୟେ ତାକୁ ଯତ୍ନର ସହିତ ପାଳିଲୁଁ । ମୋର ଯତ୍‌ସାମାନ୍ୟ ଦରମାରେ ମୋ ପାଇଁ ଦୁଧ କିଣାଯିବା ଅସମ୍ଭବ; ମାତ୍ର ପୁସି ପାଇଁ ଦୁଧ ପ୍ରତିଦିନ ଲାଗୁଆ ହେଲା । ସେଥିରେ ମୁଁ ଖୁସିରେ ସମ୍ମତ ହେଲି । ଖାଇବସିଲା-ବେଳେ ତରକାରିରୁ ମାଛତକ ତା ଭାଗରେ ପଡ଼ିଲା । ମୁଁ ସ୍ନେହରେ

ଶ୍ରୀମଣ୍ଡଙ୍କ ଆଗରେ କେବଳ ଅନୁଯୋଗ କରି ତାହା ଦେଖାଇଲି । ସବୁବେଳେ ଶ୍ରୀମଣ୍ଡଙ୍କ କୋଳରୁ ମୋ କୋଳ, ମୋ କୋଳରୁ ଶ୍ରୀମଣ୍ଡଙ୍କ କୋଳ ହେଉଥିବାରୁ ସେହି ଅଳ୍ପଳ ଦୁଲାଳୀର ପାଦ କ୍ୱଚତ୍ ତଳେ ଲାଗେ ।

× × ×

ସାମାନ୍ୟ ପୁସିଟୁଆଟା ଯେ ମୋର ଏଡ଼େ ବଡ଼ ଗୋଟାଏ ଶତ୍ରୁ ହୋଇଉଠିବ, ତା ମୁଁ ସେତେବେଳେ କଳ୍ପନା କରି ନ ଥିଲି । କ୍ରମେ ଦେଖିଲି ଯେ, ଶ୍ରୀମଣ୍ଡଙ୍କ ସ୍ନେହ ଶ୍ରଦ୍ଧା ମୋଠାରୁ ବରାବର କମି କମି ଆସୁଛି, ସେ ସ୍ଥାନ ଅଧିକାର କରି-ବସୁଛି ସ୍ଥର ପୁସିଟୁଆଟା । ଏଥିରେ କଅଣ କେଉଁ ପତ୍ନୀଗତପ୍ରାଣ ସ୍ୱାମୀର ଦେହ ସହେ ?

ଆଜିକାଲି ଶ୍ରୀମଣ୍ଡଙ୍କ ଭାବଭଙ୍ଗୀ ଏକାବେଳକେ ଭିନ୍ନ । ମୁଁ ଅଫିସରୁ ଆସିଲେ ସେ ଆଉ ହସି ହସି ଦୁଆରମୁହଁରୁ ମୋତେ ପାଛୋଟି ନିଅନ୍ତି ନାହିଁ । ମୁଁ ଖଟଉପରେ ବସି ଶ୍ରାନ୍ତିର ଦୀର୍ଘ ନିଶ୍ୱାସ ଯେତେ ମାଇଲେ ସୁଦ୍ଧା, ସେ ଆଉ ଆସି ଗୁଣ୍ଡିରୁ ଜାମା ବୋତାମ ଫିଟାଇ ଦିଅନ୍ତି ନାହିଁ କି ଗୋଡ଼ରୁ ଚପଲ କାଢ଼ି ଦିଅନ୍ତି ନାହିଁ । ଶୀତଦିନ ସକାଳେ ମୁଁ ଜାଣିଶୁଣି ଅନ୍ୟମନସ୍କ ହୋଇ ବସିଲେ ମଧ୍ୟ ସେ ଆଉ ତାଙ୍କ ବରଫ ପରି ଥଣ୍ଡା ହାତ ଆଣି ମୋ ନିଦ-ଖିଅର ଗାଲରେ ଲଗାଇ ହସି ଉଠନ୍ତି ନାହିଁ, କି ରବିବାର ଦିନ ରନାବାଡ଼ା ପାଇଁ ଆଉ ଅଳି କରନ୍ତି ନାହିଁ ।

ମୁଁ ତ ଏ କଥା ମୁହେଁ ମୁହେଁ ଅଭିଯୋଗ କରିପାରିବ ନାହିଁ । ତଥାପି ବୁଲେଇ ବାଲେଇ ଗୋଟାଏ କିଛି କାମର ବରାଦ କଲେ ସେ

ବୋମା ଫୁଟିଲା ପରି କହିଉଠନ୍ତି, "ତୁମକୁ କଅଣ ଦିଶୁ ନାହିଁ ? ମୁଁ ତବ କୁନକୁ ଦୁଧ ପିଆଉଛି । ସେ ବଡ଼ ଦୁଷ୍ଟ ହେଲଣି ।" କୁନ ଆଉ କେହି ନୁହେ—ସେହି ପୁସିଛୁଆ ।

ଶ୍ରୀମତୀଙ୍କ ଏ ଖାପଛଡ଼ା ବ୍ୟବହାର, ଏ ଢଙ୍ଗଢ଼ାଙ୍ଗ ମନେ ବଡ଼ ଅସହ୍ୟ ହୋଇଉଠିଲା । ସବୁ ରାଗ ଯାଇ ପଡ଼ିଲା ସେହି ଅଲକ୍ଷଣା ପୁସିଟା ଉପରେ—ଯେପରି କି ସେ ମୋର ଗୋଟାଏ ଅତି ବଡ଼ ଭାଗୀଦାର । ମାତ୍ର ଶ୍ରୀମତୀଙ୍କ ଡରରେ ସବୁ ଚୁପ ହୋଇ ସହିବାକୁ ଲାଗିଲି ।

କିନ୍ତୁ ସହିବାର ତ ଗୋଟାଏ ସୀମା ଅଛି । ସେଦିନ ଅଫିସ ବେଳ ଉଚ୍ଛୁର ହୋଇଯିବାରୁ ମୁଁ ତରବର ହୋଇ ଗଣ୍ଡାଏ ଉହୁ ଉହୁ ଭାତ ଖାଇବସିଛି, କେହି ଟିକିଏ ପଙ୍ଖା କରିଦେଉ ନାହାନ୍ତି ବୋଲି ରାଗରେ ମନେ ମନେ କୁହୁଳୁଛି । ଶ୍ରୀମତୀ ଶ୍ରଦ୍ଧାରେ ଏକାବେଳକେ ବିଗଳିତ ହୋଇପଡ଼ି କୃତ୍ରିମ କୋପରେ କହିବାକୁ ଲାଗିଲେ, "ଏ ପାଜି କୁନକୁ ଆଉ ସମ୍ଭାଳି ହେବ ନାହିଁ । ଆଜି ହାଣ୍ଡି ଭାଙ୍ଗି ମାଛଯାକ ଖାଇଦେଇଛି ।"

ସେତେବେଳେ ମୋର ସର୍ବାଙ୍ଗ ଜଳିଉଠିଲା । ଏକେ ତ ମାଛ ତରକାରି ନାହିଁ, ସେଥିରେ ପୁଣି ଚାରି ପାଞ୍ଚ ପଇସାର ହାଣ୍ଡିଟିଏ ବି ଗଲା । ମୁଁ ଖୁବ୍ ରାଗି ଯାଇଛି, ଶ୍ରୀମତୀ ତାହା ଜାଣି ମଧ୍ୟ ଦେହରେ ନ ଲାଗିଲା ପରି ରହିଲେ । ତାହା ମୋତେ ବେଶୀ ଅସହ୍ୟ ବୋଧ ହେଲା । ମୁଁ ଦରଖିଆ ହୋଇ ଉଠିଆସିଲି ।

ଅଫିସରୁ ଫେରି ଦେଖିଲି, ରୋଷେଇ ହୋଇ ନାହିଁ । ବହୁତ ବେଳ ଗଲା । ମୁଁ ରାଗରେ କାହା ବାଡ଼କୁ ଚାହିଁ କହିଲା ପରି

କହିଲ—"ମଣିଷ ଖଟି ଖଟି ଆସିଲ୍ ଯେ, ଟିକଏ ଶୃ ସୁଦ୍ଧା ମିଳୁ ନାହିଁ । ତେବେ ଆଉ ଘରକୁ ଆସି ଲାଭ କଅଣ ?"

ସେପାଖରୁ ସେହିପରି କଏ କାହାକୁ କହିଲ୍ ପରି ଶୁଣାଗଲ —"ଦୁଧ ତ ବୁନ ଖାଇଗଲ, ଶୃ ହେବ କେମିତି ?"

× × ×

ଶ୍ରୀମତୀ ଓ ମୋ ମଧ୍ୟରେ ସ୍ୱତମତ ଗୋଟାଏ ମସ୍ତବଡ଼ ପାଚେରୀ ଠିଆ ହୋଇଗଲ୍ ଗୁର ପୁସିବୁଆଟା ଲଗି । ଦୁହିଁଙ୍କ ମଝରେ ସିଧା ସଳଖ କଥାବାର୍ତ୍ତା ବନ୍ଦ । ମୁଁ ରଗରଗ ହେଲ୍ ବେଳକୁ ସେ ତମତମ ହୋଇଉଠନ୍ତି । ମୁଁ ପୂର୍ବକୁ ମୁହଁ କଲେ ତାଙ୍କ ମୁହଁ ପଶ୍ଚିମକୁ ହୋଇଯାଏ । ତଥାପି ପୁସିପ୍ରେମ ତାଙ୍କର ଗଲ୍ ନାହିଁ । ମୋର ସେ ପୁସି ପ୍ରତି ଯେତିକ ରାଗ ବଢ଼ିବାକୁ ଲଗିଲ, ତାଙ୍କର ତା ପ୍ରତି ସେତିକ ଶ୍ରଦ୍ଧା ପ୍ରବଳ ହୋଇଉଠିଲ୍ । ମୋତେ ଚଡ଼ାଇବା ପାଇଁ ସେ ମୋ ଆଗରେ ତାକୁ ବେଶୀ ଟେଲ କରିବାକୁ ଲଗିଲେ, ବେଶୀ ମାଛ ଦୁଧ ଖାଇବାକୁ ଦେଲେ । ମୁଁ କେବଳ ଅନ୍ତରରେ ପୋଡ଼ଜଳି ହୋଇ ଛଟପଟ ହେଉଥାଏଁ ।

ଶେଷକୁ ଆଉ ସମ୍ଭାଳିପାରିଲି ନାହିଁ । ପୁସିବୁଆଟା ମୋର ଦୁଇ ଆଖିର କଣ୍ଟା ହୋଇଉଠିଲ୍ । ଦିନେ ସକାଳୁ ଉଠି ମନେ ମନେ ଠିକ କଲି, ଯେ କୌଣସି ପ୍ରକାରେ ହେଉ, ଆଜ ପୁସିଟାକୁ ଏଠାରୁ ବିଦା କରିବ, ମୋ ପ୍ରେମପଥରୁ କଣ୍ଟା ଉପାଡ଼ ପକାଇବ ।

× × ×

ସେଦିନ ରବିବାର, ଅଫିସ ବନ୍ଦ । ଦିନଯାକ ଘରେ ବସି ମୁଁ ବହୁତ ଫାନ୍ଦ ଫିକର କଲି; ମାତ୍ର କୌଣସି ଉପାୟରେ

ତା ସମ୍ଭବ ହୋଇପାରିଲା ନାହିଁ । ଶ୍ରୀମନ୍ତ କପରି ଜାଣିଗଲେ ନାଁ। କଅଣ ? ସେ ପୁସିଟାକୁ ଗୋଡ୍ଡେ ଗୋଡ୍ଡେ ଜଗିରହିଲେ ।

କ୍ରମେ ସନ୍ଧ୍ୟା ହେଲା । ମୁଁ ଭାବିଲି, ରାତିରେ ଶ୍ରୀମନ୍ତ ଶୋଇପଡ଼ିଲେ ପୁସିକୁ ନେଇ ମୁଁ ଏ ପଡ଼ା ପାର କରିଦେଇ ଆସିବି । ମନ କଥା ମନେ ଥାଏ । ଏଣୁତେଣୁ ଗଣ୍ଡାଏ ଖାଇ ମୁଁ ବିଛଣାର ଗୋଟାଏ କଡ଼ରେ ଚୂପ ହୋଇ ଶୋଇପଡ଼ିଲି ।

ଶ୍ରୀମନ୍ତଙ୍କ ସାଙ୍ଗରେ ଅପଡ଼ ହେଲା ଦିନୁ ଆମ ବିଛଣା ମଝିରେ ଗୋଟାଏ ବଡ଼ ମାଣ୍ଡି ବନ୍ଧ ଦିଆଯାଏ । ସେଦିନ ମଧ ସେ ବନ୍ଧ ଦେଇ ଆର ପାଖରେ ଶ୍ରୀମନ୍ତ ଆସି ଶୋଇଲେ । ମୁଁ ମିଛରେ ଘୁଙ୍ଗୁଡ଼ି ମାରି ଗାଢ଼ ନିଦରେ ଶୋଇବାର ଛଳନା କରିଥାଏଁ ।

କେଜାଣି କାହିଁକି, ଶ୍ରୀମନ୍ତ ସେଦିନ ଶୋଇବା ଆଗରୁ ପୁସିକୁ ଆଣି ଖଟ ଗୋଡ଼ରେ ଗୋଟାଏ ଲମ୍ବା ଦଉଡ଼ିରେ ବାନ୍ଧି ପକାଇଲେ । ମୋ କାର୍ଯ୍ୟର ସୁଗମ ହେଲା ବୋଲି ମୁଁ ମନେ ମନେ ଖୁସି ହେଉଥାଏଁ ।

ରାତି ଖୁବ୍ ବେଶୀ ହେଲା । ଶ୍ରୀମନ୍ତ ନିଦରେ ଶୋଇ ବେଶ୍ ଘୁଙ୍ଗୁଡ଼ି ମାଇଲେ । ମୁଁ ଆସ୍ତେ ଖଟ ଉପରୁ ଓହ୍ଲାଇଲି । ଚାରିଆଡ଼ ଘନ ଅନ୍ଧକାର । ପୁସି କେଉଁଠି ଅଛି, ଜାଣିବା ମୁସ୍କିଲ । ମୁଁ ଥିର ହୋଇ ଖଟତଳକୁ ଆସି ପୁସିକୁ ଦରାଣ୍ଡିଲି । ମାତ୍ର ନ ପାଇବାରୁ ତାକୁ ଧରିବା ଇଚ୍ଛାରେ ବୋବାଇଲି—'ମ୍ୟାଉଁ, ମ୍ୟାଉଁ' ।

ଠିକ୍ ସେହି ସମୟରେ ମୋ ମୁଣ୍ଡ ଉପରଆଡ଼ୁ ଶବ୍ଦ ଆସିଲା—'ମିଆଉଁ, ମିଆଉଁ' ।

ମୁଁ ଖୁସି ହୋଇଗଲି । ପୁସିକୁ ଧରିବା ପାଇଁ ତା ଶବ୍ଦ ବାରି ଖଟତଳେ ହାମୁଡ଼େଇ ହାମୁଡ଼େଇ ଆଗକୁ ଗଲି । ହାତରେ ଦରଣ୍ଡିଲି; ମାତ୍ର ପୁସିକୁ ପାଇଲି ନାହିଁ । ପୁଣି ଶବ୍ଦ କଲି, 'ମ୍ୟାଉଁ, ମିଆଉଁ' । ତେଣୁ ମଧ୍ୟ 'ମିଆଉଁ, ମିଆଉଁ' ଶବ୍ଦ ମୋ ପାଖକୁ ଲଗି ଲଗି ଆସିଲା ପରି ଜଣାଗଲା ।

ମୁଁ ବୁଝିନେଲି, ମୋ କୌଶଳ ଠିକ୍ ଖାପିଛି । ମୁଁ ପୁସି ପରି ବୋବାଇବାରୁ ସେ ପୁସିଟା ମୋତେ ଆଉ ଗୋଟାଏ ପୁସି ଭାବି ମୋ ପାଖକୁ ଆସୁଛି । କେବଳ ହାତରେ ପଡ଼ିଲେ ହେଲା । ଏକାବେଳକେ ବେକକୁ ଧରି ଚିପିଦେବି । ନାଁ, ନାଁ, ଜୀବ ବଧ କରିବା ମହାପାପ । ତାକୁ କୁଗା କାନରେ ପୂରାଇ ଘରୁ ବାହାରକୁ ନେଇଯିବି । ତା ପରେ ଏକାବେଳକେ ଦ୍ୱୀପାନ୍ତର—ଏ ପଡ଼ା ବାହାର ।

ଆଗକୁ ଯାଉ ଯାଉ ହଠାତ୍ ମୋ ମୁଣ୍ଡ ବାଇ କରି ପିଟି ହୋଇଗଲା । ମୁଁ 'ଉଃ' ବୋଲି କହି ଚମକଉଠିଲା ବେଳକୁ ତେଣୁ ପ୍ରତିଧ୍ୱନି ଆସିଲା 'ଉଃ' । ମୁଁ କିଛି ବୁଝିପାରିଲି ନାହିଁ । ଖଟତଳୁ ଉଠିଆସି ସୁଇଚ ଟିପିଦେବାରୁ ଘରଭିତରେ ଆଲୁଅ ଖେଳିଗଲା । ଦେଖିଲି, ପୁସିବୁଆ ଆରାମରେ ତକିଆଉପରେ ଯାକଯୁକ ଶୋଇ ଉଷୁମ ଟାଣୁଛି । ଖଟତଳୁ ଶ୍ରମଶ୍ରି ଆଣ୍ଠେଇବା ଅବସ୍ଥାରୁ ତରତର ହୋଇ ଉଠି ବସିବାକୁ ଚେଷ୍ଟା କରୁକରୁ ତାଙ୍କ ମୁଣ୍ଡଟା ଆଉ ଥରେ ଖଟ ଗୋଡ଼ରେ ପିଟି ହୋଇଗଲା । ମୁଁ ଅନନ୍ୟୋପାୟ ହୋଇ ତାଙ୍କୁ ଦୁଇ ହାତରେ କୁଣ୍ଢାଇ ଖଟତଳୁ ଉପରକୁ ନେଇଆସିଲି ।

ସେଇଦିନରୁ ଆମର ମାନ ଅଭିମାନ ଛୁଟିଯାଇଛି । ପୁସିଛୁଆ ଅଛି; କିନ୍ତୁ ମୋର ତା ପ୍ରତି ଆଉ ରାଗ ନାହିଁ । ଶ୍ରୀମତୀଙ୍କର ମଧ୍ୟ ମୋ ପ୍ରତି ଥିବା ପୂର୍ବ ଶ୍ରଦ୍ଧା ଓ ପ୍ରେମରେ କିଛି ଆଞ୍ଚ ଲାଗିଲା ପରି ଆଉ ମୋତେ ଜଣାପଡ଼ୁ ନାହିଁ । ମୋ‌ଟ ଉପରେ ଆମ ମନ୍ଦିରେ ଠିଆହୋଇଥିବା ପାରେଗ୍ରୀଟା ଦୃଷ୍ଟି ପଡ଼ୁଛି । ଆଜିକାଲି ବିଛଣା ମନ୍ଦିରେ ଆଉ ମାଣ୍ଡି ଦିଆଯାଏ ନାହିଁ ।

× × ×

ଦିନେ ଶ୍ରୀମତୀଙ୍କୁ ଟେଲ୍କେଇ ହୋଇ ସେ ଦିନର ରାତି କଥା ପଚାରିଲି । ସେ କହିଲେ—"ନିଆଁ ଲଗା ପୁସିଟା ଲାଗି ମୋତେ କେତେ ଦଣ୍ଡ ମିଳିଲା ସିନା ! ଖଟତଳେ ସେ ମ୍ୟାଉଁ ମ୍ୟାଉଁ ହେଉଛି ଶୁଣି ମୋର ଭୟ ହେଲା । ମୁଁ ଭାବିଲି, ତା ପାଟିରେ ତୁମ ନିଦ ଭାଙ୍ଗିଯିବ, ତୁମେ ଉଠି ମୋତେ ଗାଳିଦେବ ନ ହେଲେ ତାକୁ ପିଟିବ । ତାକୁ ଧରିଆଣି ତୁନି କରି କୋଳରେ ଶୁଆଇ ପକାଇବି ବୋଲି ଖଟତଳକୁ ଓଲ୍ହାଇଗଲି । ମାତ୍ର ତାକୁ ଅନ୍ଧାରରେ ପାଇଲି ନାହିଁ । ମିଆଉଁ ମିଆଉଁ ବୋବେଇଲେ ସେ ପାଖକୁ ଆସିବ ଭାବି ଖଟତଳେ ଗୁରୁଣ୍ଡି ମୁଁ ବୋବେଇଲି; ଚେଣ୍ଟେ ସେ ଆସିଲା ସତ, ମାତ୍ର ପୁସି ତ ଖଟ ଉପରେ ଶୋଇଥିଲା; କିଏ ଆଉ ସେମିତି ବୋବାଉଥିଲା, ମୁଁ କିଛି ଜାଣିପାରିଲି ନାହିଁ ।

ପନ୍ଦର ଦିନଯାଏ ଶ୍ରୀମତୀଙ୍କ ମୁଣ୍ଡ ଦରଜ ହୋଇଥିଲା ବୋଲି ସେ କହୁଥିଲେ । ମୋ ମୁଣ୍ଡ ବଥା କରୁଥିଲେ ମଧ୍ୟ ମୁଁ ସେ କଥା ତାଙ୍କୁ ଜାଣିବାକୁ ଦେଇ ନାହିଁ ।

———

## ଯୁଗ୍ଧବଜାର ପୂଅ

ଗୋଟିଏ, ଦୁଇଟି, ତିନୋଟି ପରେ ଯେତେବେଳେ ଚତୁର୍ଥ ଥର ପାଇଁ ମଧ୍ୟ ଗୋଟିଏ କନ୍ୟାରତ୍ନ ଲାଭ ହେଲା, ସେତେବେଳେ ଯାଇ ଚୈତନ୍ୟବାବୁଙ୍କର ଚୈତନ୍ୟ ଉଦୟ ହେଲା ଯେ, ଏମାନଙ୍କୁ ପାରଉତ୍ତର କରାଯିବ କପରି ? ଜଣେ ପଗୁଣ୍ଟଙ୍କିଆ କରାଣୀ ପକ୍ଷରେ ଚାରି ଚାରୋଟି କନ୍ୟା-ଫାଶକୁ ନିଜ ବେକରୁ ହୁଗୁଳାଇବା ଯେତେ କଷ୍ଟକର ନ ହେଉ ପଛକେ, ସେହି ଚିନ୍ତା ହିଁ ସେତେ ବଡ଼ ଯନ୍ତ୍ରଣାଦାୟକ ହୋଇଉଠେ । ଚତୁର୍ଥ ସନ୍ତାନ ଜନ୍ମ ପରେ ଚୈତନ୍ୟବାବୁ ଯେପରି କ୍ଷୁବ୍ଧ ହେଲେ, ତାଙ୍କ ସ୍ତ୍ରୀ ରତ୍ନ ପ୍ରସୂ ରତ୍ନମଣି ଦେବୀ ମଧ୍ୟ ସେହିପରି ହତାଶ ହୋଇପଡ଼ିଲେ ।

ଏକା ତାଙ୍କ ଝିଅ ନୁହେ, ସମ୍ପ୍ରଦାୟ ଝିଅ ଜାତିଟା ଉପରେ ରତ୍ନଦେବୀଙ୍କର ବଡ଼ ରାଗ । ଟିକକ କଥାରେ ସେ ନିଜ ଝିଅ-ମାନଙ୍କୁ ଯେମିତି ମାରଧର କରନ୍ତି, ପରଝିଅ ହେଲେ ବି ସେମିତି ତାଙ୍କ ଉପରେ ରାମ୍ପୁଡ଼ା କାମୁଡ଼ା ହୁଅନ୍ତି । ଝିଅଙ୍କ ଉପରେ ଚିଡ଼ଚିଡ଼ି ତାଙ୍କ ସ୍ୱଭାବ ମଧ୍ୟ ବଡ଼ ଚିଡ଼ା ହୋଇଗଲାଣି । ଏପରି ସ୍ୱଭାବ ପରିବର୍ତ୍ତନରେ ଚୈତନ୍ୟବାବୁ ଯେ ମନେମନେ ଟିକିଏ ଭୟ ପାଇଯାଇ ନାହାନ୍ତି, ତା ନୁହେ । ମାତ୍ର ପ୍ରକାଶ୍ୟରେ କିଛି ଜଣାଇ ଦଅନ୍ତି ନାହିଁ । ସେ ଅତି ଶ୍ରଦ୍ଧା କରୁଥିବା ଝିଅମାନଙ୍କୁ ମାଆର ଅଧିକାର ନେଇ ରତ୍ନଦେବୀ ମାରଧର କଲେ ତାଙ୍କ ମନରେ ବଡ଼ କଷ୍ଟ ହୁଏ ସତ; ମାତ୍ର ପ୍ରତିବାଦ କରିବାର କ୍ଷମତା ତାଙ୍କର ନ ଥାଏ ।

ଝିଅ ଜାତିଟା ଉପରେ ରତ୍ନମଣିଙ୍କର ଏପରି ରାଗ ହେବାର କାରଣତା କିଛି ନାହିଁ । ଏହି ଝିଅ ଜାତିଟା ଯୋଗୁଁ ହିଁ ତାଙ୍କର

ସବୁ ପ୍ରକାର ଆଶା ଆକାଂକ୍ଷା ଲୋପ ପାଇଛି, ସବୁ ପ୍ରକାର ସୁଖ ସୌଭାଗ୍ୟ-ସୌଧ ଭାଙ୍ଗିପଡ଼ିଛି । କମ୍ ହାରାମଜାଦା ଏ ଝିଅଗୁଡ଼ାକ !

ଚୈତନ୍ୟବାବୁ ଆଗେ କଅଣ ଥିଲେ କେଜାଣି, ବର୍ତ୍ତମାନ ଏସବୁ ବିଷୟରେ ବଡ଼ ନିର୍ବିକାର । ଝିଅ କାହାର ବା ପୁଅ କାହାର ? ଝିଅଙ୍କୁ ପାରଉତ୍ତର କରିବା ପାଇଁ ଯେତିକି ଝିନ୍‌ଝଟ, ଯେତିକି ଚହଖର୍ଚ୍ଚ, ପୁଅଙ୍କୁ ପାଠ ପଢ଼ାଇ ମଣିଷ କରିବା ପାଇଁ ମଧ୍ୟ ସେତିକି ହକ୍‌ଦାର, ସେତିକି ଅର୍ଥବ୍ୟୟ । ବିଶେଷରେ ଏହି ଚତୁର୍ଥ କନ୍ୟାର ଜନ୍ମ ବେଳୁ ତାଙ୍କର ଏକ ପ୍ରକାର ବୈରାଗ୍ୟ ଆସିଯାଇଛି । ଅଫିସରେ ତାଙ୍କର ସହକର୍ମୀ ହରିବାବୁ ତାଙ୍କ ହାତ ଦେଖି ସେ କେବଳ ଛଅଟି ଝିଅର ବାପ ହେବେ ବୋଲି ଭବିଷ୍ୟତ୍ ବାଣୀ ଶୁଣାଇଛନ୍ତି, ଆଉ ହରିବାବୁ ଯେ ଅଫିସରେ ଜଣେ ଜଣାଶୁଣା 'ପାମିଷ୍ଟ' ଅର୍ଥାତ୍ ହାତଦେଖାଳୀ, ଏ କଥା ଅନ୍ୟ କାହାରଠାରୁ ଶୁଣା ଯାଉ ନ ଯାଉ, ଖୋଦ୍ ହରିବାବୁଙ୍କଠାରୁ ବହୁତ ଥର ଶୁଣାଯାଇଛି ।

× × ×

ଚୈତନ୍ୟବାବୁଙ୍କର କିନ୍ତୁ ପ୍ରଥମେ ବିବାହିତ ଜୀବନର ଲକ୍ଷ୍ୟ ଥିଲା ଭିନ୍ନ ପ୍ରକାର । ସେ ଟିକିଏ ବେଶୀ ବୟସରେ ବିବାହ କରିଥିଲେ । ସେତେବେଳକୁ ଯୌବନ ନାଟିକାର ପ୍ରଥମ ଅଙ୍କଟାର ପଟକ୍ଷେପ ହୋଇ ଦ୍ୱିତୀୟ ଅଙ୍କ ଚାଲିଛି ।

ରତିଦେବୀଙ୍କ ପ୍ରଥମ ଗର୍ଭାଧାନବେଳେ ଚୈତନ୍ୟବାବୁ ମନେ ମନେ ହିସାବ କରି ନେଇଥିଲେ—ବର୍ତ୍ତମାନ ମୋତେ ହେଲା

ତିରିଶ ବର୍ଷ । ଯଦି ଏହି ସମୟରେ ଗୋଟିଏ ପୁଅ ହୁଏ, ତେବେ ଠିକ୍ ପଞ୍ଚାବନ ବର୍ଷ ବୟସ ବେଳେ ସେ ମୋର ଦାୟିତ୍ୱ ପୂରାପୂରି ବହନ କରିନେଇ ପାରିବ । ସେତେବେଳେ ଏ ଦୀର୍ଘ ପଚିଶ ବର୍ଷର ହାଡ଼ଭଙ୍ଗା ଖାଟେଣି ପରେ ମୁଁ ଟିକିଏ ବିଶ୍ରାମ ନେଇ ନିଶ୍ଚିନ୍ତ ହେବି; ଧର୍ମଚର୍ଚ୍ଚାରେ ସମୟଟା ମଧୁରତର କରିପାରିବି ।

ସେହି କଳ୍ପନାରୁ ତାଙ୍କର ଦୃଢ଼ ଧାରଣା ହୋଇଗଲା ଯେ, ପ୍ରଥମ ସନ୍ତାନଟି ତାଙ୍କର ପୁଅ ହେବ ଏବଂ ସେ ହେବ ନିଶ୍ଚୟ ସୁନ୍ଦର ଗୋରା ତକ୍‌ତକ୍ ଓ ବୁଦ୍ଧିମାନ୍ । ତାର ନାମ କଅଣ ଦିଆଯିବ, କିପରି ବାତାବରଣରେ ତାର ଶିଶୁଜୀବନ କଟାଇ-ବାକୁ ହେବ, ତାର ବିଦ୍ୟାଶିକ୍ଷା କି ଧରଣର ହେବ, ଜୀବନରେ ସେ କି ବୃତ୍ତି କରିବ—ଏହିସବୁ କଳ୍ପନାରେ ସେ ଅଧିକାଂଶ ସମୟ କଟାଇଦେଲେ । ଏପରି କି ବେଳେବେଳେ ନିଜର ଭୋକ ଶୋଷ ବି ଭୁଲିଗଲେ । କଳ୍ପନା ବଢ଼ିବଢ଼ି ତାଙ୍କ ଭବିଷ୍ୟତ ସନ୍ତାନର କିପରି କେଉଁଠାରେ ବିବାହ କରିବ, ସେତେବେଳକୁ ସେ ନିଶ୍ଚୟ ସବ୍‌ଡେପୁଟି ହୋଇଥିବ, ବହୁତ ଯୌତୁକ ପାଇବ, ସେ ନିଜେ କିପରି କନ୍ୟାପିତା ସହିତ ଦର କଷାକଷି କରିବେ ପ୍ରଭୃତି ଧାପପର୍ଯ୍ୟନ୍ତ ଉଠିଗଲା ।

ଏହିସବୁ ସ୍ୱପ୍ନକୁ ସଫଳ କରିବା ଉଦ୍ଦେଶ୍ୟରେ ଚୈତନ୍ୟ-ବାବୁ ନିଜ ସ୍ତ୍ରୀଙ୍କୁ ନିପଟ ମଫସଲ ଗାଁରୁ କାର୍ଯ୍ୟକ୍ଷେତ୍ର କଟକ ସହରକୁ ନେଇ ଆସିଲେ ।

ପୁଅ ପାଇବା ଆଶା ଯେ ରତ୍ନଦେବୀଙ୍କ ମନରେ ଟିକିଏ ଉଙ୍କି ମାରି ନ ଥିଲା, ତାହା ନୁହେଁ । ତେବେ ସେ ଚୈତନ୍ୟ-ବାବୁଙ୍କ ପରି ଏଭଳି କଳ୍ପନାରେ ଭାସିଯାଇ ନ ଥିଲେ ।

କଟକ ଆସି ରତ୍ନଦେବୀ ସ୍ୱାମୀଙ୍କ ସାନ୍ନିଧ୍ୟରେ ଯେତିକ ଉତ୍‌ଫୁଲ୍ଲ ହୋଇଉଠିଲେ, ସାଇପଡ଼ଶାରେ ଥିବା ବଡ଼ ଲୋକ-ମାନଙ୍କ ଘରଣୀଙ୍କ ସହିତ ମିଶି ସେହିପରି ନୂଆ ଦୀକ୍ଷାରେ ଦୀକ୍ଷିତ ହୋଇପଡ଼ିଲେ ।

× × × ×

ଚୈତନ୍ୟବାବୁ ଦିନେ ଅଫିସରୁ ନିତାନ୍ତ କ୍ଳାନ୍ତ ହୋଇ ଫେରିଆସିଲା ପରେ ରତ୍ନଦେବୀ ସବୁଦିନ ପରି ଯତ୍ନରେ ତାଙ୍କୁ ନିଜ ହାତ ତିଆରି ଜଳଖିଆ ବଢ଼ାଇଦେଲେ । ପାଖରେ ବସି ଦରକାର ନ ଥିଲେ ମଧ୍ୟ ପଙ୍ଖାଟି ଧୀରେ ଧୀରେ ହଲାଇ ସ୍ୱାମୀଙ୍କ ମନର ଭାବଭଙ୍ଗୀ ଲକ୍ଷ୍ୟ କରିନେଲେ । ସ୍ୱାମୀ ଶାନ୍ତ ହୋଇ ତାଙ୍କ ମୁହଁକୁ ମଧୁର କଟାକ୍ଷରେ ଗୃହିଁ ଟିକିଏ ଦରହାସ ଫୁଟାଇଲାକ୍ଷଣି ରତ୍ନଦେବୀ ଅତି କୋମଳରେ କହିଉଠିଲେ, "ଆଉ କେଉଁଠି କଅଣ ଆମକୁ ବସା ମିଳିବ ନାହିଁ ?"

"କାହିଁକି ? ଏଠାରେ କଅଣ ତୁମର କିଛି ଅସୁବିଧା ହେଲାକି ?"—ଚୈତନ୍ୟବାବୁ ଟିକିଏ ଦବିଗଲା ପରି ପ୍ରଶ୍ନ କଲେ ।

ରତ୍ନଦେବୀ ମୁହୂର୍ତ୍ତେ ଗୁମ୍ ଖାଇ କହିଲେ—ଅସୁବିଧା କିଛି ନୁହେ ଯେ, ମୋତେ ଏଠାରେ ବଡ଼ ଅଡ଼ୁଆ ଲାଗୁଛି । ସବୁ ଦିନ ଡେପୁଟିବାବୁ, ମାଷ୍ଟରବାବୁ ପ୍ରଭୃତିଙ୍କ ଭାରିଯାମାନେ ଆସି ଆମ ଦୁଆରେ ବସି ଗପ ଲଗାଉଛନ୍ତି । ଆଜି ଡେପୁଟିବାବୁଙ୍କ ଭାରିଯା ମୋତେ ତାଙ୍କ ଘରକୁ ଡାକି ନେଇଥିଲେ । ତାଙ୍କ ହାତରେ ସୁନା କାଚ, ସୁନା ବାଲା, ବେକରେ କଳିକଣ୍ଠି ହାର । ତାଙ୍କ ଆଗରେ ମୋର ଏ ଧୋବ ଫରଫର ରୂପାବାଲାଲଗା ହାତ ଦେଖାଇବାକୁ

ବଡ଼ ଲଜ ଲଗୁଛି । ଆଜ ତ ଡେପୁଟି ବାବୁଙ୍କ ଘରଯା ସଫା କହି ଦେଲେ, 'ତୁମର ଏ ଗୋରା ହାତକୁ ରୂପା କାଚ ଜମା ମାନୁ ନାହିଁ । ତୁମେ ବାବୁଙ୍କୁ କହି ସୁନା କାଚ କେଇପଟ କରାଇ ନଉ ନାହିଁ କାହିଁକ ?'

ଆଗ୍ରହରେ ଚୈତନ୍ୟବାବୁ ପଚାରିଲେ—ଏହା ଶୁଣି ତୁମେ କଅଣ କହିଲ ?

ରତ୍ନଦେଈ ଉତ୍ତର ଦେଲେ—ମୁଁ ଆଉ କଅଣ ମୋ ସ୍ୱାମୀମାନଙ୍କ ଆଗ କଥା ଜଣାଇ ଦିଅନ୍ତି ? ମୁଁ କହିଲି, ମୋର ସୁନା ବାଲି, ସୁନା କାଚ ଅଛି ଯେ, ତାହା ମଫସଲ ଗଡ଼ଣର । ଏଠାକୁ ଆସି ବଣିଆକୁ ନୂଆ ଫେସନରେ ଗଢ଼ିଦେବାକୁ ବରାଦ ଦେଇଛି ।

ଚୈତନ୍ୟବାବୁଙ୍କ ମନକୁ କଥାଟା ଭେଦିଗଲା । ସେ ମଧ୍ୟ ସ୍ତ୍ରୀଙ୍କ ହାତରେ ରୂପା କାଚ ଦେଖି ମନେ ମନେ ଦୁଃଖିତ ହେଉଥିଲେ । ମାତ୍ର କରିବେ ବା କଅଣ ? ପଚାଶଟଙ୍କିଆ କିରାଣୀର କରମ ଯେ ଖଆଳ ବାଛେ, ମନ ଜଗଣ ଉପରେ ଚଢ଼ିଲେ କଅଣ ହେବ ?

ତଥାପି ସେ ସ୍ତ୍ରୀଙ୍କ ବୁଦ୍ଧିକୁ ମନେମନେ ପ୍ରଶଂସା କଲେ । ସେ ଯେ ନିଜେ ସିଧା ସଳଖ ସୁନା ଅଳଙ୍କାର ନ ମାଗି ଅନ୍ୟ ଭାବରେ କଥାଟା ଉଠାଇଛନ୍ତି, ତାହା ଜାଣି-ପାରିଲେ ।

ପୁଅ ଆଶାରେ ତାଙ୍କ ମନ ମସ୍‌ଗୁଲ୍ ଥିଲା । ସେ ତତ୍‌କ୍ଷଣାତ୍ କହିଉଠିଲେ, "ଏଇ କଥା ତ । ତୁମେ ଯଦି

ଏଥର ମୋତେ ପୁଅଟିଏ ଉପହାର ଦେବ, ତା ପ୍ରତିବଦଳରେ ଏକୋଇଶ ଦିନ ତୁମଙ୍କୁ ନିଷ୍କପ୍ତ ସୁନା ବାଲି ଓ ସୁନା କାଚ ଆଣି ଦେବ ।"

ରତ୍ନଦେବୀଙ୍କ ମୁହଁ ସଲ୍ଲଜ ଆନନ୍ଦରେ ସୁନ୍ଦର ଦେଖାଗଲା ।

ଚୈତନ୍ୟବାବୁ ରାତିରେ ବିଛଣାରେ ପଡ଼ି ଭାବିଲେ—କାଚ ଆଉ ବାଲି । ଆଠ ଦିନ ଭିତରେ ହୋଇଯିବ । ଗଡ଼ା ମଜୁରି ସହ ଉଣା ପଡ଼ିବ ତିରିଶ ଟଙ୍କା । ତେଣୁ ମୋଟ ଅଢ଼େଇ ଶହ ଟଙ୍କା ମଧ୍ୟରେ ଦରକାର । ଏତିକି କଅଣ ମୋ ଜୀବନରେ ମୁଁ କରିପାରିବି ନାହିଁ ?

ଅଢ଼େଇ ଶହ ଟଙ୍କା—ଏହି ଅଙ୍କଟା ଟିକିଏ ତାଙ୍କ ମନକୁ ଦବାଇଦେଲା । ପୁଣି ମୁହୂର୍ତ୍ତିକ ପରେ ସେ ଭାବିଲେ, ଏତିକି ମାତ୍ର ଯଦି ସ୍ତ୍ରୀକୁ ଦେଇ ନ ପାରିବି, ତେବେ ମୋର ବାବାଜୀ ହୋଇଯିବା ଉଚିତ ଥିଲା ।

ଶେଷକୁ ଭାବି ଠିକ୍ କଲେ, ଶହେଟି ଟଙ୍କା ଡାକଘରେ ଅଛି—ଗଲା ପାଞ୍ଚ ବର୍ଷ ଚାକିରିର ସଞ୍ଚିତ ଅର୍ଥ । ବାକି ଦେଢ଼ ଶହ ଟଙ୍କା କାବୁଲିଠାରୁ ଆଣିବି । ମାସକୁ ଦଶ ଟଙ୍କା ହିସାବରେ ତାକୁ ଶୁଝିବାକୁ ହେବ । ବାସ୍, ପନ୍ଦର ମାସ ପରେ ସବୁ ସଫା ।

ଏହି କଥା ଠିକ୍ କରି ସେ ଏ ଭାବନାରୁ ନିଶ୍ଚିନ୍ତ ହେଲେ । କେତେବେଳେ କପରି କୌଣସି କାବୁଲିକୁ ଦେଖିଲେ, ଟଙ୍କା ନେବା ପ୍ରସ୍ତାବ ନାନା ସ୍ୱରରେ ଉଠାଉଥିଲେ ।

ଚୈତନ୍ୟବାବୁ ଓ ରତ୍ନଦେବୀଙ୍କ ହିସାବ ଅନୁସାରେ ଆଉ ଦୁଇଟି ମାସ ବାକି । ଚୈତନ୍ୟବାବୁ ଏଇ ହିସାବଟା ଦିନକୁ ଅନ୍ତତଃ ପାଞ୍ଚ ଥର ମନେମନେ କରୁଥାଆନ୍ତି । ସେ ଏବେ ଧାତ୍ରୀଶିକ୍ଷା, ପ୍ରସୂତିଚର୍ଯ୍ୟା ପ୍ରଭୃତି କେତେ ଖଣ୍ଡ ବହି କିଣି ଆଣି ଘଣ୍ଟା ଦିନ ମନ ଦେଇ ପଢ଼ୁଛନ୍ତି । ଆଉ ସେଥିରେ ଲେଖାଥିବା ଲକ୍ଷଣମାନ ମିଳାଇ ଦୃଢ଼ ଧାରଣା କରିନେଲେଣି ଯେ, ତାଙ୍କ ସନ୍ତାନ ପୁତ୍ର ଆଗତପ୍ରାୟ । ବହିରେ ଅଛି, ଡାହାଣ ଆଖି ପ୍ରଶସ୍ତ ଦେଖାଗଲେ, ମୁହଁ ପ୍ରସନ୍ନ ହେଲେ, ଦକ୍ଷିଣ କୁଚ ଅପେକ୍ଷାକୃତ ଉଚ୍ଚ ଦିଶିଲେ—ପୁଅ ହେବ । ଚୈତନ୍ୟବାବୁ ଥରକୁ ଥର ନିରୀକ୍ଷଣ କରି ସ୍ଥିର ଜାଣିଗଲେ ଯେ, ଏସବୁ ଲକ୍ଷଣ ରତ୍ନଦେବୀଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ । ତାଙ୍କ କଳ୍ପନା ମଟରଗାଡ଼ି ପରି ଖୁବ୍ ଜୋରରେ ଆଗକୁ ଧାଇଁଲା ।

ସେ ନିଶ୍ଚିତ ଜାଣିଲେ, ଏ ବର୍ଷ ରତ୍ନଦେବୀଙ୍କଠାରୁ ତାଙ୍କୁ ଗୋଟିଏ ଗୋଲଗାଲ ସୁନ୍ଦର ପୁଅ ଉପହାର ମିଳିବ—ଯାହାର ମୂଲ୍ୟ ସ୍ୱରୂପ କି ତାଙ୍କୁ ଅଢ଼ାଇ ଶହ ଟଙ୍କା ଦେବାକୁ ପଡ଼ିବ । ସେହି ଟଙ୍କା ହାତଗତ କରିବା ପାଇଁ ସେ ବ୍ୟସ୍ତ ହୋଇ-ଉଠିଲେ । ଟଙ୍କାତକ ଠିକ୍ ସମୟରେ ଯୋଗାଡ଼ କରି ନ ପାରିଲେ ସତେ ଅବା ମୂଲ୍ୟବାନ୍ ଆକାଂକ୍ଷିତ ପଦାର୍ଥ ହାତରୁ ଖସିଯିବ । ନାନା ପ୍ରକାର ମଧୁର କଳ୍ପନା ସଙ୍ଗେ ସଙ୍ଗେ ବିପଦର ଆଶଙ୍କା ଯେ ତାଙ୍କ ମନରେ କେତେବେଳେ କିପରି ଉଙ୍କି ମାରୁ ନ ଥାଏ, ତା ନୁହେଁ । ତେବେ ଡାକ୍ତରଖାନା ପାଖରେ ଅଛି ଭାବି ସେ ସେ ଚିନ୍ତାରୁ ଶୀଘ୍ର ମୁକ୍ତି ପାଇ ଯାଉଥିଲେ ।

× × × ×

ଦିନ ଖୁବ୍ ନିକଟ ହୋଇଆସିଲା । ଚୈତନ୍ୟବାବୁ ବଣିଆକୁ ବାଲା କାଚର ବରାଦ ଦେଇ ଥରେ ଦୁଇ ଥର ତାଗିଦା କରି ସାରିଲେଣି । କାବୁଲି ସମ୍ବନ୍ଧ କଥାବାର୍ତ୍ତା ପକ୍କା ହୋଇଗଲାଣି । କେବଳ କାବୁଲି ଟଙ୍କା ଆଣିଲେ ଚୈତନ୍ୟବାବୁ ହାଣ୍ଡନୋଟଖଣ୍ଡ ଦସ୍ତଖତ କରି ତା ହାତକୁ ବଢ଼ାଇଦେବେ ।

ଚୈତନ୍ୟବାବୁଙ୍କ କଳ୍ପନା ଦିନେ ହଠାତ୍ କାଞ୍ଜିଆ ହୋଇଗଲା । ଯାହା ପାଇଁ ଏତେ ଆୟୋଜନ, ଏତେ ସୁଖସ୍ୱପ୍ନ, କଳ୍ପନା ଜଳ୍ପନା, ଶେଷକୁ ଦେଖାଗଲା, ସେ ଧପ୍ପା ଦେଇ କେଉଁଠି ରହିଗଲା । ତା ବଦଳରେ ସେ ପଠାଇଦେଲା ଗୋଟିଏ କନ୍ୟା ମାନ ।

ଚୈତନ୍ୟବାବୁଙ୍କ ମୁହଁ ଅବଶ୍ୟ ଟିକିଏ ଫିକା ପଡ଼ିଗଲା; କିନ୍ତୁ ବେଶୀ କ୍ଷୁଣ୍ଣ ହେଲେ ରତିଦେବୀ । ଥରେ ଥରେ ଝିଅଟାର ଶିଶୁଟି ପଡ଼ିଥିବାର ସେ ଶୁଣିଦେଲେ ସ୍ୱତଃ ଆଖି ଦୁଇଟା ନିଜ ହାତପାପୁଲି ଆଡ଼କୁ ଚାଲିଯାଏ । ଜୋରେ କରି କାନ୍ଦ ଉଠିବାକୁ ତାଙ୍କର ଇଚ୍ଛା ହୁଏ ।

× × ×

ଆଶା ନୈରାଶ୍ୟରେ ଦିନ ସମସ୍ତଙ୍କର କଟିଥାଏ । ଚୈତନ୍ୟବାବୁ ଓ ରତିଦେବୀଙ୍କର ମଧ୍ୟ ଦିନ କଟିଗଲା । ପୁଣି ଯେତେବେଳେ ଦୁହିଁଙ୍କ ଭିତରେ ସୁନା କାଚ ବାଲା ସମ୍ପର୍କରେ କଥା ପଡ଼ିଥିଲା, ସେତେବେଳକୁ ରତିଦେବୀ ଅନ୍ତଃସତ୍ତ୍ୱା । ତାଙ୍କ କଥାରୁ ଜଣାଗଲା, ସେ ଏଥରକ ନିଶ୍ଚୟ ଚୈତନ୍ୟବାବୁଙ୍କୁ ଗୋଟିଏ ପୁଅ ଦେବେ, ଆଜି ତାର ମୂଲ୍ୟ ସ୍ୱରୂପ ପୂର୍ବ ପ୍ରତିଶ୍ରୁତି ସ୍ୱରୂପ ସୁନାବାଲା ସୁନାକାଚ ଆଦାୟ କରିବେ । ଚୈତନ୍ୟବାବୁଙ୍କ ଭାବରୁ ବୁଝାଗଲା, ସେ

ପ୍ଅ ପାଇଲେ ନିଶ୍ଚୟ ତାର ଉପଯୁକ୍ତ ଦାମ ଦେବେ । ନିଜ ପ୍ରତିଜ୍ଞା ସେ କଦାପି ଭୁଲି ନାହାନ୍ତି ।

ଦୈବଯୋଗକୁ ତୃତୀୟ ସନ୍ତାନଟି ମଧ୍ୟ ଝିଅ ହେଲା । ଉଭୟଙ୍କ ମନ ଭାଙ୍ଗିଗଲା । ଦୁହିଁଙ୍କ ମନରେ ଯାହା ବା କେତେବେଳେ କପରି ଆଶା ଟିକିଏ ଜଣଆଖିଆ ମାରୁଥିଲା, ତୃତୀୟ ସନ୍ତାନଟି ଝିଅ ହେବାରୁ ସେତକ ବି ଲୋପ ପାଇଲା ।

ଝିଅଗୁଡ଼ାକ ରତ୍ନଦେବୀଙ୍କର ବଡ଼ ଚକ୍ଷୁଶୂଳ ହୋଇ-ଉଠିଲେ । ଦୁନିଆକୁ ବିଧାତା ଏ ଝିଅଗୁଡ଼ାଙ୍କୁ କାହିଁକି ପଠାଇ-ଥାଆନ୍ତି, ସେ କଥା ସେ ଯେତେ ଭାବିଲେ ବି ଠିକ କରିପାରିଲେ ନାହିଁ ।

. ସୁନା ବାଲି, ସୁନା କାଚର ଆଶା ମନରୁ କେବେଠୁଁ ଲୋପ ପାଇଛି । ଥରେ କଉଣ ସେ ବିଷୟରେ କଥା ପଡ଼ିଥିଲା । ରତ୍ନଦେବୀ ମୁହଁ ମୋଡ଼ି ଦେଇ ତ଼ଗ ବୋଲିଥିଲେ—

"ଶୁଖିଲା ପାନକୁ ଶୁଖିଲା ଚୂନ,
ମୋଡ଼ି ମାଡ଼ି ହୋଇ ରହ ରେ ମନ ।"

ଅକାରଣରେ ମଧ୍ୟ ପାଖରେ ବସି ଖେଳୁଥିବା ସାନଝିଅ ପିଠିରେ ଠାଇ କରି ଗୋଟାଏ ଚଟକଣା ବସାଇଦେଲେ ।

ଚତୁର୍ଥ ଥର ସୁନା ବାଲି କାଚ କଥା ମନରେ ଖେଳିଥିଲା କି ନାହିଁ ଠିକ୍ କହିହେବ ନାହିଁ । କିନ୍ତୁ ସେଥର ମଧ୍ୟ ଯେତେ-ବେଳେ ଝିଅଟିଏ ହେଲା, ତାଙ୍କର ମନ ହେଲା, ତା ତୋଟି ଚିପି

ହଅନ୍ତେ । ମାତ୍ର ଗୋଟାଏ କେଉଁ ଅଜ୍ଞାତ ଶକ୍ତି ତାଙ୍କୁ ସେଥିରୁ ଅବଶ୍ୟ ନିବର୍ତ୍ତାଇଥିଲା ।

ଚୈତନ୍ୟବାବୁ ଏ ଝିଅଟିର ନାମ ଦେଇଛନ୍ତି ଇତି । ଇତି ନାମ ଭଳି ଦୁଇ ଅକ୍ଷରର ନାମ ହୋଇଥିବ, ଆଉ ଶେଷରେ 'ତି' ଥିବ—ଏଇଟାକୁ ସେ ବେଶୀ ପସନ୍ଦ କରନ୍ତି । ତେଣୁ ସତୀ, ମତି, କ୍ଷେତି ଜନ୍ମ ପରେ ଆଉ ସେପରି ନାମ ନ ପାଇ ସେ 'ଇତି' ନାମଟା ହିଁ ବାଛି ଦେଇଛନ୍ତି । ଇଚ୍ଛା, ଏଇଠାରେ ଇତି ହେଉ । ଏଣିକି ଶଶିବାବୁଙ୍କ ସୂଚନା ଅନୁସାରେ ଯଦି ତାଙ୍କୁ ଆଉ କେତୋଟିଙ୍କ ବାପ ହେବାକୁ ପଡ଼େ, ତେବେ ଦେଉଳକୁ ମୁକ୍ତିଆଳ ମିଳିଯିବ ।

× × × ×

ଦୁହିଁଙ୍କର ବିରକ୍ତି ଓ ଅନିଚ୍ଛାସତ୍ତ୍ୱେ ଇତିଦେବୀ ପଞ୍ଚମଥର ପାଇଁ ଗର୍ଭବତୀ ହେଲେ । ବୋଧହୁଏ ଦୁହେଁଯାକ ଏକାବେଳକେ ପରସ୍ପରର ଅଦୃଶ୍ୟରେ ନିଜ ନିଜ କପାଳରେ ହାତ ପିଟି କହିଥିବେ, "ଷଠୀ ଗୋସେଇଁ, ଏତିକିରେ ହେଲେ କ୍ଷାନ୍ତ କର ।"

କିନ୍ତୁ ଷଠୀ ଗୋସେଇଁ ଏ କାକୁତି ମିନତି ଶୁଣିଲେ ନାହିଁ । ସମୟ ଦିନକୁ ଦିନ ନିକଟ ହୋଇଆସିଲା । ଇତିଦେବୀ ବଡ଼ କ୍ଷୋଭର ସହିତ ମନେ ମନେ ଠିକ୍ କରିନେଲେ, ଏ ଝିଅଟି ଜନ୍ମ ହେଲାକ୍ଷଣି ସେ ତାଙ୍କର ଦେଖିଲା କାମ କରିଦେବେ ।

ଚୈତନ୍ୟବାବୁଙ୍କ ନିର୍ବିକାର ମନ ମଧ୍ୟ ଦବିଗଲା । ଚାରୋଟି ହୋଇଥିଲେ ଚଳା ଥିଲା, ଏଥରକ ହେବ ପାଞ୍ଚ । ଶଶିବାବୁଙ୍କ କଥା ଅନୁସାରେ ଅ'ର ବର୍ଷକୁ ଆଉ ଗୋଟିଏ ଆସିବ । ଛ ଛଅଟା ଝିଅଙ୍କୁ ଖୁଆଇ ପିଆଇ ବର ଘରକୁ ପଠାଇବା ଚିନ୍ତା ବଡ଼ ମର୍ମନ୍ତୁଦ ଭାବରେ ତାଙ୍କ ପେଟ ଭିତର ଖୋଳି ପକାଇଲା ।

ଗୃହ ଥରର ଅଭିଜ୍ଞତା ପରେ ଚୈତନ୍ୟବାବୁଙ୍କ ରକ୍ତ ଦେଖା ଆଜକାଲ ପ୍ରସବ ସମୟ ପାଇଁ ଆଉ ବ୍ୟାକୁଳ ନୁହନ୍ତି କି ପ୍ରଥମ ଥର ପର କୌଣସି ଆୟୋଜନ ଦରକାର ମନେ କରନ୍ତି ନାହିଁ । 'ଇଣ୍ଡି'ର ଜନ୍ମବେଳକୁ ତ ଚୈତନ୍ୟବାବୁ ପାଞ୍ଚ ଦିନ ଆଗରୁ ଘରେ ନ ଥିଲେ ।

ସମୟକ୍ରମେ ପଞ୍ଚମ ସନ୍ତାନଟି ଜନ୍ମ ହେଲା ଦିନ ଦି'ପହରରେ । ଚୈତନ୍ୟବାବୁ ସେତେବେଳେ ଅଫିସରେ ବସି ହିସାବ ମିଳାଇବାରେ ବୁଡ଼ି ରହିଅଛନ୍ତି । ଯେତେବେଳେ ଘରୁ ଲୋକ ଯାଇ ଖବରଦେଲା ଯେ, ବର୍ତ୍ତମାନ ଗୋଟିଏ ପୁଅ ହୋଇଛି, ଚୈତନ୍ୟ-ବାବୁ ବୋକାଙ୍କ ପରି ମୁହୂର୍ତ୍ତେ ତା ମୁହଁକୁ ଚାହିଁ ରହିଲେ । ତା ପରେ ଆନନ୍ଦ କି ବିରକ୍ତି, କଅଣ ତାଙ୍କ ମୁହଁରେ ପ୍ରକାଶ ପାଇଲା, କିଛି ବୁଝାଗଲା ନାହିଁ । କେବଳ ପାଟିରୁ ବୋଧହୁଏ ତାଙ୍କ ଅଜ୍ଞାତରେ ବାହାରି ପଡ଼ିଲା—ଅଲକ୍ଷଣା ଛୁଆ । ବେଶୀ କଥା କହିବା ଅବସ୍ଥାରେ ଥିଲେ ସେ ମନକଥା ଖୋଲି କହିଥାନ୍ତେ, "ତୋର ଏତିକବେଳକୁ ଆସିବାର ଥିଲା ? ଏ ଯେ ଯୁଦ୍ଧବଜାର—ସୁନା ଭରି ଶହେ ପଚାଶ ଟଙ୍କା । ଯେତେବେଳେ ସୁନା ଭରି କୋଡ଼ିଏ ଟଙ୍କା ଥିଲା, ସେତେବେଳେ କିଏ ତୋର ବାଟ ବନ୍ଦ କରିଥିଲା କି ?"

ଠିକ୍ ସେହି ସମୟରେ ତେଣେ ଘରେ ରକ୍ତଦେବୀ ଟିକିଏ ଦମ୍ଭ ହୋଇସାରି ଛୁଆଟି ଆଡ଼କୁ ଚାହିଁଥିବେ । ପୁଣି ସାଙ୍ଗେ ସାଙ୍ଗେ ତାଙ୍କ ଆଖି ଦୁଇଟା ହାତପାପୁଲିର ଧଳା ଧଳା କାଚ ଦୁଇପଟ ଆଡ଼କୁ ଟାଣି ହୋଇ ଆସିଥିବ ।

---

# ସିଦ୍ଧ ବଶୀକରଣ କବଚ

( ପୂର୍ବାର୍ଦ୍ଧ )

ଶ୍ରୀଚରଣବାବୁ କପରି ଯେ ଏତେ ବଡ଼ କାଳୀଭକ୍ତ ହୋଇ-ଉଠିଲେ, ତାହା ଐତିହାସିକ ଅନୁସନ୍ଧାନ କଲେ ଗୋଟାଏ ବିରାଟ ଇତିହାସ ଲେଖିବେ । ତେବେ ମୋଟାମୋଟି ଏତିକ କୁହାଯାଇ-ପାରେ ଯେ, ତାଙ୍କର ଏ କାଳୀବିଶ୍ୱାସ ପୂରାପୂରି ପ୍ରକାଶ ପାଇଥିଲା ସ୍କୁଲରେ ବାର୍ଷିକ ପରୀକ୍ଷା ଦେବା ବେଳେ । ପରୀକ୍ଷାର ଚାରିଦିନ ଆଗରୁ ପ୍ରମୋସନ ପାଇବାପର୍ଯ୍ୟନ୍ତ ସେ ପ୍ରତି-ଦିନ ସନ୍ଧ୍ୟାରେ କାଳୀମନ୍ଦିରକୁ ଯିବାକୁ ଲାଗିଲେ । କେଉଁ ଦିନ ଫୁଲ ମାଳଟାଏ, କେଉଁ ଦିନ ଘିଅଦୀପ ବା କେଉଁ ଦିନ ଦୁଇ ପଇସାର ପେଡ଼ା ଭୋଗ ଲଗାଇବାକୁ ସେ ଭୁଲିଲେ ନାହିଁ । ଫଳରେ କାଳୀଙ୍କ ଅନୁଗ୍ରହ ଲାଭ କଲେ ଏବଂ ପ୍ରତିବର୍ଷ ସେତେ ପଛରେ ପଡ଼ିଲେ ମଧ୍ୟ ଗୋଟି ଗୋଟି କରି କ୍ଲାସ-ରାଜ୍ୟ ଜୟ କରି ଦିଗ୍‌ବିଜୟୀ ବୀର ହୋଇ ଉଠିଲେ ।

ସେକେଣ୍ଡ କ୍ଲାସରେ ସେ କାଳୀଙ୍କ ମାହାତ୍ମ୍ୟ ଖୁବ୍ ବେଶୀ ଭାବରେ ଉପଲବ୍‌ଧି କଲେ । ସେ ହେଲେ ମନିଟର । ଫୁଟବଲ୍ ଖେଳ ସମୟରେ ଖେଳପଡ଼ିଆକୁ ଯିବା ପୂର୍ବରୁ ସେ ପାଞ୍ଚ ଥର ଦୁଆରମୁହଁ କାନ୍ଥରେ କାଳୀଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ପିଟନ୍ତି । ତାଙ୍କ କ୍ଲାସ ଗୋଲ ନ ଖାଇଲେ ଦୁଇ ପଇସାର ଗୋଲ ଗୋଲ ରସଗୋଲା କାଳୀଙ୍କୁ ଖୁଆଇବେ ବୋଲି ମାନସିକ କରନ୍ତି । ଯେଉଁ ଦିନ ତାଙ୍କ କ୍ଲାସ ଗୋଲ ଖାଏ, ସେ ଦିନ କାଳୀଙ୍କ ରସଗୋଲାଖିଆ ବନ୍ଦ । ଯେଉଁ ଦିନ କ୍ଲାସ ଗୋଲ ନ ଖାଏ, ସେ

ଦିନ ଶ୍ରୀଚରଣବାବୁ ଦୁଇ ପଇସା ଖରଚ କରିବେ କି ନାହିଁ, ସେଥି ଗୋଲକଧନ୍ଦାରେ ପଡ଼ିଯାଆନ୍ତି ।

ଏହିସବୁ ଘଟଣାରେ ଶ୍ରୀଚରଣଙ୍କର କାଳୀଭକ୍ତି ଅଗାଧ ହୋଇଉଠିଲା । ସେ ପ୍ରତି ଦିନ ସନ୍ଧ୍ୟାରେ ଅନ୍ତତଃ ଅଧଘଣ୍ଟାଏ କାଳୀମନ୍ଦିରକୁ ଯାଆନ୍ତି । କାଳୀଙ୍କ ସମ୍ମୁଖରେ ଠିଆ ହୋଇ ବିଭିନ୍ନ ଅଙ୍ଗଭଙ୍ଗୀରେ ଦେବୀଙ୍କୁ ପ୍ରଣାମ କରିବା; ନାକ କାନ ଗଣି ଗଣି ପାଞ୍ଚ ଥର ମୋଡ଼ିଦେବା; ଦୁଇ ଗାଲରେ ପାଞ୍ଚ ଥର ଲେଖାଏଁ ଚଟକଣା ମାରିଦେବା, ଠିଆ ହୋଇ, ନଇଁ, ଆଣ୍ଠୁମାଡ଼ି ବସି, ମୁହଁ ମାଡ଼ି ଶୋଇ ପାଞ୍ଚର ଗୁଣିତ ଗୁଣ କୋଡ଼ିଏ ଥର ମୁଣ୍ଡିଆ ମାରିବା, ତାଙ୍କର ଗୋଟାଏ ଦୈନିକ କର୍ତ୍ତବ୍ୟ ହୋଇପଡ଼ିଲା ।

ସେ ଦେଖିଲେ, ସେତେବେଳେ କାଳୀମନ୍ଦିରଟା ଗୋଟାଏ ଚଡ଼ଆଖାନା ହୋଇଉଠେ । ତାଙ୍କର ପରି ବହୁ ଭକ୍ତ ଆସି ସେଠାରେ ରୁଣ୍ଡ ହୁଅନ୍ତି । ନିଜର ମନକାମନା ପୂରଣ ଲାଗି ଅଳି କରନ୍ତି । ରୋଗୀ ପ୍ରାର୍ଥନା କରେ, 'ରୋଗ କପର କମିଯାଉ; ସେ ଗୋଟିଏ ବୋଦା ଦେବ ।' ଡାକ୍ତର ମୁଣ୍ଡିଆ ମାରି ଅଳି କରନ୍ତି, 'ସହରରେ ରୋଗ ବେଶୀ ବଢ଼ୁ, ତା ହେଲେ ସେ ଦିନେ ଖୁବ୍ ଭଲ ରୂପେ ଭୋଗ ଲଗାଇବେ ।' ମକଦ୍ଦମା ଆସାମୀ ମୁଣ୍ଡିଆ ମାରି କହେ, 'ମକଦ୍ଦମା ଛୁଟି ଯାଉ ।' ଓକିଲ କହେ, 'ମକଦ୍ଦମା ଲାଗି ରହିଥାଉ ।' ବାଦୀ କହେ, 'ମୋର ଜୟ ହେଉ', ପ୍ରତିବାଦୀ କହେ, 'ମୁଁ ଜିତେ' । ବେପାରୀ ଆସି କାମନା କରେ, 'ତାକୁ ଆଜି ଗାଡ଼ିରେ ଭଲ ମାଲ ସୁବିଧାରେ ମିଳୁ' । ଧନୀ ଲୋକ ଜଣାଏ, 'ତା ଧନ ପ୍ରତି ଚୋରର ଆଖି ନ ପଡ଼ୁ' । ବେପାରୀ ମାଡ଼ୁଆଳି ବଡ଼

କାକୁତି ମିନତିରେ ଯେପରି ସୁବିଧାରେ ଧାନ ଚାଉଳ ଓ ଗନକ ଟେକ୍ସ ଲୁଗା କପଡ଼ା କଲିକତା ପଠାଇ ଦେଇପାରିବ, ସେଥିପାଇଁ ମାଆଙ୍କ ପାଖରେ ଧାରଣା ଦିଏ । ଲାଞ୍ଚ ମିଛ ଧରୁଥିବା ଅଫିସର ଲୋକେ ଅଳି କରନ୍ତି, ସେମାନେ ଯେପରି ଟ୍ରେନରେ ପଠା ଯାଉଥିବା ମାଲ ଧରି ବେଶ୍ ମୋଟା ଦୁଇ ପଇସା ଫାଉ ଉଠାଇପାରିବେ । କେହି ସ୍ତ୍ରୀ ଲୋକ ପତିର ଦୀର୍ଘଜୀବନ କାମନା କରି ମୁଣ୍ଡିଆ ମାରେ; କେହି ବା ମାଡ଼ ଦେଉଥିବା ପତିର ଆଶୁ ମୃତ୍ୟୁ ଲାଗି ଅଳି କରେ । କେଉଁ ରସିକ ନିବେଦନ କରେ, ସେ ତା ପ୍ରେୟସୀ ଘରୁ କାଲି ପରି ଆଜି ରାତିରେ ତଡ଼ା ନ ଖାଉ । ପୁଣି କେଉଁ ରସିକା ଅଳି କରେ, ତା ପ୍ରେମିକ ଆଉ କୁଆଡ଼େ ନ ଯାଇ ତା ପାଖକୁ ଆସୁ । ଏହିପରି ପ୍ରତ୍ୟେକେ ନିଜ ନିଜ କାମନା ମାଆଙ୍କୁ ଜଣାନ୍ତି ଓ ତାଙ୍କ କାମନା ପୂରଣ ହେଲେ ନାନା ପ୍ରକାର କଳାଟୋପାଳି ଦେବା ଲାଗି ଲୋଭ ଦେଖାନ୍ତି । ବୋଧହୁଏ ମା କାହାରି କାମନା ପୂରଣ କରନ୍ତି ନାହିଁ । ତା ନ ହୋଇଥିଲେ ତାଙ୍କ ମନ୍ଦିର ଆଜି ସୁନାରେ ଗୁଆଣି ହୋଇ ଯାଆନ୍ତାଣି ।

ଏହି ହଜାର ହଜାର ଭକ୍ତଙ୍କ ମଧ୍ୟରେ ଶ୍ରୀଚରଣ ନିଜକୁ ମିଶାଇଦେଲେ ଏବଂ ଅଗାଧ ଭକ୍ତି ଫଳରେ ମାଟ୍ରିକୁଲେସନ ମେଘନାଦପାଚେରୀ ଏକା କୁଦାକେ ଡେଇଁ ରେଭେନ୍ସା କଲେଜ ଲଙ୍କାରେ ଯାଇ ହାଜର ହୋଇଗଲେ ।

କାଳୀଭକ୍ତି ସଙ୍ଗେ ସଙ୍ଗେ ଶ୍ରୀଚରଣଙ୍କର ପିଲା ଦିନୁ ଆଉ ଗୋଟାଏ ଆଡ଼େ ଝୁଙ୍କ ଥିଲା । ସେ ଶୁଣିଥିଲେ, ବଡ଼ ବଡ଼ କଳା ହାକିମ ହୁକୁମାମାନେ ତାଙ୍କ ସାଙ୍ଗିଆ ପଛରେ ସାହେବ ପଦ ଯୋଡ଼ି ଧନ୍ୟ ହୋଇଛନ୍ତି । ସେ ମନେ କଲେ,

ମୁଁ ତ ତ୍ରିପାଠୀ; ତା ହେଲେ 'ତ୍ରିପାଠୀ ସାହେବ' ନ ହେବ କାହିଁକି ? ନିଜ ବହି, ଖାତା ଉପରେ ସେହିଦିନୁ ସେ ଲେଖିଲେ 'ତ୍ରିପାଠୀ ସାହେବ' । ସାଙ୍ଗ ସାଥିମାନଙ୍କୁ ଚିଠି ଦେଲେ ଶେଷରେ ଲେଖି ଦେଉଥିଲେ ତ୍ରିପାଠୀ ସାହେବ । ଏହା ଦେଖି କ୍ଲାସର ପିଲାଏ ତାଙ୍କୁ ଚିଡ଼ାଇଲେ, କ୍ଲାସ ମାଷ୍ଟର ସବୁ ପିଲାଙ୍କ ଆଗରେ କାନ ମୋଡ଼ିଦେଲେ । ସେହିଦିନୁ ସେ ସାହେବ ଲେଖା ଛାଡ଼ିଦେଲେ ସତ, ମନରୁ କିନ୍ତୁ ସେ କଥା ଭୁଲିପାରିଲେ ନାହିଁ ।

ସେକେଣ୍ଡ କ୍ଲାସରେ ମନିଟର ହୋଇ ନାମ ପଛରେ ମନିଟର ଉପାଧିଟା ଯୋଡ଼ି ଦେଇଥିଲେ । ତାହା କେବଳ ବର୍ଷକ ପାଇଁ ମାତ୍ର । ଫାଷ୍ଟ କ୍ଲାସକୁ ଉଠି ସେତକ ଲୋପପାଇଲା ।

କଲେଜରେ ପଢ଼ିଲା ବେଳେ କାଳୀଙ୍କଠାରୁ ସେ ଦୂରରେ ରହିଗଲେ । ତେଣୁ ପ୍ରତିଦିନ ଦର୍ଶନ କରିବାର ସୁଯୋଗ ଜୁଟିଲା ନାହିଁ । ହେଲେ କାଳୀଙ୍କ ଛବି ସବୁବେଳେ ପାଖରେ ରଖି ଫୁଲ ଚନ୍ଦନ ଦେବା, କ୍ଲାସକୁ ଗଲାବେଳେ ଦୁଆରମୁହଁ କାନ୍ଥରେ ପାଞ୍ଚ ଥର ମୁଣ୍ଡିଆ ମାରିବାଟା ସେ ଛାଡ଼ିଲେ ନାହିଁ ।

ନାମ ପଛରେ ଅକ୍ଷର ଯୋଡ଼ିବା କଳ୍ପନାଟା ତାଙ୍କର ବଢ଼ିଗଲା ବହୁତ ବେଶୀ । ଆଇ. ଏ. ପାସ ପରେ ଅବଶ୍ୟ କିନ୍ତୁ ଲେଖିବା ସୁନ୍ଦର ନୁହେଁ । ତଥାପି ସେ ବା କାହିଁକି ଶ୍ରୀଯୁକ୍ତ ଶ୍ରୀଚରଣ ତ୍ରିପାଠୀ, ଆଇ. ଏ. ନ ଲେଖିବେ ? ଆଉ ଦୁଇବର୍ଷ ପରେ ତ ବି. ଏ. । ଯେତେବେଳେ ତାଙ୍କ ନାମ ପଛରେ ବି. ଏ. ଯୋଡ଼ା ହେବ, ସେ କାଳୀଙ୍କ ପାଖରେ ନିଶ୍ଚୟ ଟଙ୍କାକର ଭୋଗ

ଲଗାଇବେ । ନାମ ପଛରେ ବି. ଏ.— କିଛି କମ କଥା ନୁହେ । ସେ ଚୁକ୍ତି ବଙ୍ଗଳା 'ବି ଏ' ର ପାହାଚ । ତାପରେ ଏମ. ଏ. । ତେଣିକି ଡେପୁଟି, ହାକିମ, ଏମିତି କେତେ କଅଣ ? ରାୟ ସାହେବ, ରାୟ ବାହାଦୁର, ସି. ଆଇ. ଇ., କେ. ସି. ଆଇ. ଇ. —ଏଭଳି ଅନନ୍ତ ସମୁଦ୍ର ତ ରହିଛି । ତା ଭିତରେ କଅଣ ସେଥିରୁ ବିନ୍ଦୁଏ ହେଲେ ପଡ଼ିବ ନାହିଁ ? କାଳୀଙ୍କର ତା ପ୍ରତି ବଡ଼ ଶ୍ରଦ୍ଧା, ବଡ଼ ଅନୁଗ୍ରହ । ସେ ନିଶ୍ଚୟ କିଛି ପାଇବ ହିଁ ପାଇବ ।

ଏହି ଅଗାଧ ବିଶ୍ୱାସରେ ଶ୍ରୀଚରଣଙ୍କର କଲେଜରେ ଦୁଇଟି ବର୍ଷ କଟିଗଲା । ଦୁର୍ଭାଗ୍ୟକୁ ସେ ଆଇ. ଏ. ପାଶ କରିପାରିଲେ ନାହିଁ । ବିଶ୍ୱବିଦ୍ୟାଳୟ ତାଙ୍କ ମୂଲ୍ୟ ବୁଝିଲା ନାହିଁ । 'ବାର ବାର ତିନି ବାର, ଆଉ ବାରକୁ ଧର୍ମ ଛାଡ଼ ।' ସେହିପରି ସେ ଥର ଥର ତିନି ଥର ଆଇ. ଏ. ପରୀକ୍ଷା ଦେଲେ । ତିନି ଥରଯାକ ଫେଲ ହୋଇ ଧର୍ମ ନ ଛାଡ଼ି ପାଠପଢ଼ା ଛାଡ଼ିଲେ । ଫେଲ ହୋଇଗଲେ ବୋଲି ତାଙ୍କର ଦୁଃଖ ନ ଥିଲା । ବିଶେଷ ଦୁଃଖ ହେଲା, ତାଙ୍କ ନାଁ ପଛରେ କିଛି ଅକ୍ଷର ଯୋଡ଼ା ହୋଇପାରିବ ନାହିଁ ବୋଲି ।

କାଳୀଦେବୀଙ୍କ କୃପାରୁ ହେଉ ନ ହେଉ, ଯୁଦ୍ଧଦେବୀଙ୍କ କୃପାରୁ ଶ୍ରୀଚରଣବାବୁ ମୋଟା ଦରମାରେ ସାଙ୍ଗେ ସାଙ୍ଗେ ଗୋଟାଏ ଚାକିରି ପାଇଗଲେ—ସିଭିଲ ସପ୍ଲାଇ ଇନ୍‌ସପେକ୍ଟର । ପ୍ରଚୁର ଟଙ୍କା ପାଇବାର ଆଶା, ଖୁବ୍ ହାକିମୀ କରିବାର ଲୋଭ ତାଙ୍କୁ ଏକାବେଳକେ ପାଗଳ କରିଦେଲା ।

ସେ ମଫସଲର ଗୋଟିଏ ଥାନା ସଦରରେ ରହିଲେ । ସବୁବେଳେ ତାଙ୍କ ଅଫିସ ସରଗରମ । ରାତି ପାହିଲା ବେଳକୁ

ଦୁଆରମୁହଁରେ ଶହ ଶହ ଲୋକ ରୁଣ୍ଡ । ଓଦାଙ୍କୁ ବାହାରିଲା କ୍ଷଣି କେତେ ଦଣ୍ଡବତ, ଜୁହାର, ନମସ୍କାର, ସଲାମ । ବାଟରେ ଗ୍ଲଲଗଲେ ପଛେ ପଛେ ଦଶ ପନ୍ଦର ଜଣ ଗୋଡ଼ାଇଛନ୍ତି । ରାତି ହେଲେ 'ପାଉସର' ଟଙ୍କା ଜମା ହେବାରେ ଲଗିଲା— ମାସକ ଦରମାର ତିନ ଗୁଣ, ଗ୍ଳରି ଗୁଣ । ଘିଅ, ଦୁଧ, ମାଛ, ଅଣ୍ଡା, ଛେଳି, କୁକୁଡ଼ା, ଆମ୍ବ, ପଣସ—କିଛି ଗ୍ଳଡ଼ ନାହିଁ ।

ଏହି ସମୟରେ ଶ୍ରୀଚରଣବାବୁଙ୍କ ମୁଣ୍ଡରେ ଖେଳିଗଲା, ଏତେ ବଡ଼ ହାକମୀ ପଛରେ ଗୋଟାଏ କିଛି ଉପାଧି ଥାଆନ୍ତା କି ? ମନେ ପଡ଼ିଲା, ସେ 'ଇନ୍ସପେକ୍ଟର ଅଫ ସିଭିଲ ସପ୍ଲାଇଜ'—ଆଇ. ସି. ଏସ. । ସତେ ତ, କେଉଁ ଆଇ. ସି. ଏସ. ଅଫିସରଠାରୁ ସେ ନ୍ୟୂନ କି ? ଏ କଥା ଯେ ଏତେଦିନ ଯାଏ କାହିଁକି ତାଙ୍କ ଉର୍ବର ମସ୍ତିଷ୍କରେ ଖେଳି ନ ଥିଲା, ତାହା ଭାବି ସେ ଠିକ୍ କରିପାରିଲେ ନାହିଁ ।

ସେହି ଦିନଠାରୁ ସେ ସରକାରୀ, ବେସରକାରୀ ପ୍ରତ୍ୟେକ କାଗଜପତ୍ରରେ ଲେଖିଲେ, ଶ୍ରୀଯୁକ୍ତ ଶ୍ରୀଚରଣ ତ୍ରିପାଠୀ, ଆଇ. ସି. ଏସ. । ଏହି ନାମ ଦେଇ ଗୁଡ଼ାଏ ଚିଠିକାଗଜ ବି ଛପାଇ ଆଣିଲେ । ଥାନାର ଅନ୍ୟାନ୍ୟ ଅମଲା ମୁରୁକିହସା ଦେଲେ, ପଛରେ ଟାହି ଟାପରା କଲେ । ମାତ୍ର ସେଥିକି ଖାତିର୍ କଲେ . ଲୋକ ଦୁନିଆରେ ମୁଣ୍ଡ ଟେକିପାରିବ ନାହିଁ ।

ଯେଉଁ ଦିନ ଏହି ଆଇ. ସି. ଏସ. ଉପାଧି ପାଇଁ ଉପର ଅଫିସରୁ କଡ଼ା ତାଗିଦା ଆସିଲା, ସେ ଦିନ ପୁଣି

ଥରେ ତାଙ୍କୁ ଭାବିବାକୁ ପଡ଼ିଥିଲା । 'ଇନ୍‌ସ୍‌ପେକ୍ଟର ଅଫ୍ ସିଭିଲ ସପ୍ଲାଇଜ'—ଆଇ. ଓ. ସି. ଏସ. । ଏଥିରକ କାହାରି ବୋଧହୁଏ ସାଧ୍ୟ ନାହିଁ ଯେ, ଆପତ୍ତି କରିବ । ସେଥିପାଇଁ ସେ ଉପାଧିରେ ଆଉ ଗୋଟାଏ ଅକ୍ଷର 'ଓ' ବଢ଼ାଇଦେଲେ । ଏ କିଛି କମ୍ କଥା ନୁହେ ।

ଥରେ ଜଣେ ମୁସଲମାନ ପଣେ ଅଣ୍ଡା ଦେବ ବୋଲି କଣ୍ଟ୍ରାକ୍ଟ କରି ଟିଣେ କିରାସିନର ପରମିଟ କରି ନେଇଥିଲା । ମାତ୍ର ପରେ ଅଣ୍ଡା ଦେଇ ନ ପାରିବାରୁ ହାକିମଙ୍କଠାରୁ ମାଡ଼ ଖାଇ ସ୍ଥାନୀୟ କଂଗ୍ରେସ ଅଫିସରେ ଆପତ୍ତି କଲା । କେତେ ଜଣ କଂଗ୍ରେସକର୍ମୀ ଇନ୍‌ସ୍‌ପେକ୍ଟରବାବୁଙ୍କ ପାଖକୁ ଆସି ନାନା ପ୍ରକାର ଧମକ ଦେଲେ ।

ଇନ୍‌ସ୍‌ପେକ୍ଟର ପ୍ରଥମେ ସେମାନଙ୍କୁ ଅଫିସରୁ ବାହାରି ଯିବାକୁ ହୁକୁମ ଦେଲେ; ମାତ୍ର କର୍ମୀମାନେ ବାହାରି ନ ଯାଇ ଚେକାଟ୍ଟିରସ ହୋଇ ବସିବାରୁ ତାଙ୍କ ଅକଲ ଗୁଡ଼ୁମ୍ ହୋଇଗଲା । ସେ ଗର୍ଜିଉଠି କହିଲେ—ମୁଁ ସିଭିଲ ସପ୍ଲାଇ ଇନ୍‌ସ୍‌ପେକ୍ଟର ନ ହୋଇ ଯଦି ପୁଲିସ ଇନ୍‌ସ୍‌ପେକ୍ଟର ହୋଇ-ଥାଆନ୍ତି, ତେବେ ତୁମେ ମୋ ପାଖକୁ ଆସିବାକୁ ସାହସ କରିଥାଆନ୍ତ ନା ? ଏଇଲାଗେ ଡାକିଦେବା ମାତ୍ରକେ ପଣେ କନେଷ୍ଟବଲ ଆସି ରୁଣ୍ଡ ହୋଇଯାଆନ୍ତେ । ଯଦି ଆଇ. ସି. ଏସ. ମଝିରେ ଗୋଟାଏ 'ଓ' ଲାଗି ନ ଥାନ୍ତା, ତେବେ ଦେଖାଇ ଦେଇଥାନ୍ତି ମୋର କରାମତି ।

କିନ୍ତୁ କଂଗ୍ରେସକର୍ମୀ ତାଙ୍କ କରାମତି ଦେଖାଇଲେ । ଶ୍ରୀଚରଣବାବୁ ସେଠାରୁ କଟକ ସହରକୁ ବଦଳି ହେଲେ ।

ଏ ତ ସବୁ ଅତୀତର ଇତିହାସ ।

# ଉତ୍ତରାର୍ଦ୍ଧ

ବର୍ତ୍ତମାନ ଶ୍ରୀଚରଣବାବୁ କଟକ ସହରର ଜଏଣ୍ଟ ସିଭିଲ ସପ୍ଲାଇ ଇନ୍‌ସପେକ୍‌ଟର । ମଫସଲର ହାକମୀ ଓ ଉପୁରି ଲାଭ ଏକାବେଳକେ ବନ୍ଦ ହୋଇଯାଇଛି ସତ; ମାତ୍ର ସେ ଆଶା ଏକାବେଳକେ ଲୋପ ହୋଇଯାଇ ନାହିଁ ।

ଶ୍ରୀଚରଣବାବୁ ଝୋଲିସାହିରେ ବସା କରି ସସ୍ତ୍ରୀକ ରହୁଅଛନ୍ତି । ଝୋଲିସାହିରୁ ଝୁଲିଝୁଲି ପୁଣି ପ୍ରତିଦିନ ସନ୍ଧ୍ୟାରେ କାଳୀମନ୍ଦିରକୁ ଆସିବା ଆରମ୍ଭ ହୋଇଛି । କାଳୀ ମାଆଙ୍କୁ ନଜର ଗୁହାରି ଜଣାଇ କିପରି ବହୁତ ଉପୁରି ଲାଭ ହେବ, ସେ ବିଷୟରେ ଅଳି କରିବାରେ ଅନ୍ତତଃ ଘଣ୍ଟାଟିଏ କଟିଯାଏ । ତା ପରେ କେତେକ ବୋତଲୀ ବନ୍ଧୁଙ୍କ ସହିତ ମିଳିମିଶି ମାଆଙ୍କ ଭୋଗ ପାଇ ଘରକୁ ଫେରିଲାବେଳକୁ ରାତି ବାରଟା ।

ଶ୍ରୀଚରଣବାବୁଙ୍କ ସ୍ତ୍ରୀ କମଳୀ ବୋଧହୁଏ ଟିକିଏ ମୁଖରା— ମଫସଲରେ ଯାହାକୁ କି କହନ୍ତି 'କଳିହୁଡ଼ୀ' । ପ୍ରତିଦିନ ବାବୁ ଏତେ ରାତିରେ ଝୁଲିଝୁଲି ଫେରିବାରୁ ଏବଂ ତାଙ୍କ ଲାଲ ଆଖି ଦେଖି ସେ କେତେ କଅଣ ଠଉରାଇ ନେଲେଣି । ପ୍ରଥମେ ବୁଝାଇ ସୁଝାଇ କାଳୀମନ୍ଦିରକୁ ନ ଯିବାପାଇଁ ପ୍ରବର୍ତ୍ତାଇଲେ । ପରେ ଅଭିମାନ କଲେ, ବହୁତ ଗାଳିଗୁଲଜ ଆରମ୍ଭ ହେଲା, ଦିନେ ଦିନେ ବାବୁଙ୍କ ପଡ଼ିକାଠ କରିଦେଲେ । ତଥାପି ବାବୁଙ୍କ କାଳୀଭକ୍ତି କମିଲା ନାହିଁ । ଶେଷକୁ ଦିନେ ସେ ଦରପୋଡ଼ା କାଠଫାଳିଆ ଖଣ୍ଡେ ଧରି ବାବୁଙ୍କ ପିଠିରେ ବେଶ ଥୋଡ଼ାଏ ଉତ୍ତମ ମଧ୍ୟମ ବସାଇଦେଲେ ।

ଶ୍ରୀଚରଣବାବୁ ନିଜ ସ୍ତ୍ରୀଙ୍କୁ ଭଲରୂପେ ପ୍ରେମ କରନ୍ତି; କିନ୍ତୁ ତାଙ୍କର ଏ ଉଦ୍ଧତପଣିଆ ବଡ଼ ଅସହ୍ୟ । ସେ ପରଦିନ ଅଫିସରୁ ସିଧା କାଳୀମନ୍ଦିରକୁ ଯାଇ ଧାରଣା ଦେଇ ପଡ଼-ରହିଲେ । ସ୍ତ୍ରୀକୁ ସୁମତି ଦେବାପାଇଁ, ତା ବ୍ୟବହାରର ଉପଯୁକ୍ତ ପ୍ରତିକାର ପାଇଁ ବହୁ କାକୁତି ମିନତିରେ ଅଳି କଲେ । ଭକ୍ତି-ଗଦ୍‌ଗଦ ଚିତ୍ତରେ ବାରମ୍ବାର ମୁଣ୍ଡିଆ ମାଇଲେ । ଉଠି ଦେବୀଙ୍କ ମୁହଁକୁ ଚାହିଁ ଦେଖିଲେ, ମାଆଙ୍କ ମୁହଁହସ ହସ, ଯେପରି କି ଆନନ୍ଦ ଉପୁଚି ଉଠୁଛି ।

ରାତି ଏଗାରଟା ବେଳକୁ ମନ୍ଦିରରୁ ବାହାରି ନିଜ ଘର-ଆଡ଼କୁ ଚାଲିଲେ । ମନ ନିତାନ୍ତ ଖରାପ । ପିଠିରେ ଦରଜ କମି ନାହିଁ କି ପୋଡ଼ା ରହି ନାହିଁ । ସ୍ତ୍ରୀର ଔଦ୍ଧତ୍ୟ ବେଶୀ ବଢ଼ି-ଚାଲିଛି । ତାହାର କଅଣ ବା ପ୍ରତିକାର ହେବ ?

ଅନ୍ୟମନସ୍କ ଭାବରେ ଯାଉଯାଉ ପାଖରେ ଗୋଟିଏ ପିଲାର ପାଟି ଶୁଭିଲା, "ସମାଜ" । ଦୁଇଟିପଇସା ଦେଇ ସେ ଝଟ୍ରେ ଖବରକାଗଜ କିଣିନେଲେ । ନିର୍ବିକାର ଭାବରେ ଉପର ପାଖରେ ଆଖି ବୁଲାଉ ବୁଲାଉ ଦେଖିଲେ, ଗୋଟିଏ ସ୍ଥାନରେ ବଡ଼ ଅକ୍ଷରରେ ଲେଖା ହୋଇଛି—"ସିଦ୍ଧ ବଶୀକରଣ କବଚ"; ସ୍ତ୍ରୀ ଓ ପୁରୁଷଙ୍କୁ ବଶ କରିବା ପାଇଁ ଏକାବେଳକେ ଅବ୍ୟର୍ଥ ।

ଶ୍ରୀଚରଣବାବୁଙ୍କ ମନରେ ଖେଳିଗଲା—ଏହା ନିଶ୍ଚୟ କାଳୀମାଆଙ୍କ ଅନୁଗ୍ରହ । ତା ନ ହେଲେ ମୁଁ ତ ଦିନେହେଲେ ଝଟ୍ରେ ଖବରକାଗଜ କିଣେ ନାହିଁ । ଆଜି ବା କାହିଁକି କିଣନ୍ତି ?

ସ୍ତ୍ରୀକୁ ବଶ କରିବାର ଉପାୟ ବତାଇବା ପାଇଁ କାଳୀମା ମୋତେ ଆଜି ଏ ଖଣ୍ଡିକ କିଣିବାକୁ ପ୍ରରୋଚନା ଦେଇଛନ୍ତି ।

ସେ ରାସ୍ତା କଡ଼ରେ ଗୋଟିଏ ଆଲୁଅ ଖୁଣ୍ଟ ପାଖରେ ଠିଆ ହୋଇଗଲେ । ସିଦ୍ଧ ବଶୀକରଣ କବଚ ସମ୍ପର୍କରେ ଯାହା-ସବୁ ଲେଖା ହୋଇଥିଲା, ତାହା ମନଦେଇ ପଢ଼ିଲେ । ଥରେ, ଦୁଇ ଥର, ତିନି ଥର; ତାଙ୍କ ମନ ହାଲୁକା ହୋଇଗଲା । କାଲି ନିଶ୍ଚୟ ଗୋଟିଏ କବଚ ପାଇଁ ଚିଠି ଲେଖିବାକୁ ହେବ ।

ଘରେ ପହଞ୍ଚି ରାତିରେ ମଧ୍ୟ ସେ ପାଠତକ ସେ ପୁଣି ପଢ଼ିଗଲେ । ଶାନ୍ତମନରେ ଶୋଇଲେ ମଧ୍ୟ ରାତିରେ ସେହି କବଚ କଥା ସ୍ୱପ୍ନ ଦେଖିଲେ । ସକାଳୁ ଉଠି ପୁଣି ଥରେ ପଢ଼ିସାରି ଗୋଟାଏ କବଚ ପଠାଇବାକୁ ଚିଠି ଲେଖିଦେଲେ ।

ଠିକ୍ ସମୟରେ ପାର୍ଶଲ ଆସିଲା । ଶ୍ରୀଚରଣବାବୁ ପାଞ୍ଚ ଟଙ୍କା ବାର ଅଣା ଦେଇ ଭି: ପି: ଛଡ଼ାଇଲେ । ତାଙ୍କର ଆନନ୍ଦ ଆଜି ଘର ଧରୁ ନାହିଁ ।

କବଚର ନିୟମାବଳୀରେ ଲେଖା ଅଛି, କାଳୀମନ୍ତ୍ରରେ ଏହି କବଚକୁ ସାତ ଥର ଧୋଇ ସେ ପାଣି ଯାହାକୁ ପିଆଇଦେବ, ସେ ବଶ ହେବ । ତା ପରେ ତା ବାମ ହାତରେ ନାଲିସୂତାରେ ଏ କବଚ ବାନ୍ଧିଦେବ ।

ଶ୍ରୀଚରଣବାବୁ ଦେଖିଲେ, ବିଷମ ସମସ୍ୟା ହେଲାଣି । ସ୍ତ୍ରୀକୁ ସେ କବଚଧୁଆ ପାଣି ପିଆଇଦେବେ କପରି ? କବଚକୁ ତାଙ୍କ ହାତରେ ବାନ୍ଧିବେ ବା କେମିତି ?

ଯାହାହେଉ, ସାତ ପାଞ୍ଚ ଭାବି ମନରେ ଦମ୍ଭ ଧରିଲେ ଓ କାଳୀମନ୍ତ୍ର ସାଧନା କରିବାକୁ ଲାଗିଲେ ।

ଶ୍ରୀଚରଣବାବୁଙ୍କ ଆଜକାଲକାର ଭାବଭଙ୍ଗୀ ଦେଖି କମଳୀଙ୍କ ମନରେ କପରି କଅଣ ସନ୍ଦେହ ହେବାକୁ ଲାଗିଲା । ପ୍ରଥମରେ ସେ ଭାବଥିଲେ ଯେ, ତାଙ୍କ ଦରଜଲା କାଠ ବେଶ୍ କାମ ଦେଉଛି । ସେହି ଭାବନା କ୍ରମେ ଅନ୍ୟଆଡ଼କୁ ଗଡ଼ି କଲା ।

ଶ୍ରୀଚରଣବାବୁ ଥରେ ଥରେ କାଚଗ୍ଲାସରେ କିଛି ପାଣି ଧରି ତାଙ୍କ ପାଖକୁ ଆଣନ୍ତି ଆଉ ପିଇଦେବାକୁ କହନ୍ତି । କେତେ ସାକୁଲସାକୁଲ, ଅନୁନୟ ବିନୟ କରନ୍ତି । ସେ ଯେତିକି ପାଣି ପିଇଦେବାକୁ ଲଗାନ୍ତି, ପାଣି ନ ପିଇବା ପାଇଁ କମଳୀଙ୍କ ଜିଦ୍ ସେତିକି ବଢ଼ିଯାଏ ।

କମଳୀଙ୍କର ସନ୍ଦେହ ହେଲା, ବୋଧହୁଏ ବାବୁ ଗ୍ଲାସରେ ବିଷ ଆଣି ତାଙ୍କୁ ପିଇବାକୁ ଦେଉଅଛନ୍ତି । ନ ହେଲେ ନିଜେ ପାଣି ଚୋପାଏ ଆଣି ପିଇବା ପାଇଁ ଏତେ ଜିଦ୍ ଲଗାନ୍ତେ କାହିଁକି ? ବିଷ ଖାଇ ସେ ମଲେ ବାବୁଙ୍କର ତ 'କଟେପୁଅ ବାର'; ତାଙ୍କ ମରିବାଟାକୁ ବାବୁ ସବୁବେଳେ ଚାହିଁ ଅଛନ୍ତି ।

ଶ୍ରୀଚରଣବାବୁ ଆଉ ସମ୍ଭାଳି ରହିପାରିଲେ ନାହିଁ । ସାତ ଦିନ ବିତିଗଲାଣି, କମଳୀଙ୍କୁ କବଚଧୁଆ ପାଣି ଚୋପାଏ ପିଆଇପାରୁ ନାହାନ୍ତି । ତାଙ୍କ ହାତରେ ଆଉ କବଚ ବାନ୍ଧିବେ କପରି ? କବଚ ବନ୍ଧା ନ ହେଲେ ସେ ତ କେବେହେଲେ ବଶ ହେବ ନାହିଁ । ଦେବୀଙ୍କ ଆଜ୍ଞା ଯେ ଅବଜ୍ଞା ହେବ ।

ସେ ଦିନ ଅଫିସରୁ ବହୁତ ଭାବିଚିନ୍ତି ସେ ଘରକୁ ଫେରିଲେ । ଚାରିମାସର ଦରମା ନ ପାଇ ଚାକର ପଳାଇ ଯାଇଥିବାରୁ ଦୁଇ ଦିନ ହେଲା କମଳୀଙ୍କୁ ବହୁତ ଖଟିବାକୁ ପଡ଼ୁଛି । ବାବୁ ଆଜି ଗୋଟିଏ ଚାକର ଆଣିବେ ବୋଲି ଆଶ୍ୱାସନା ଦେଇ ଯାଇଥିଲେ । ସାଙ୍ଗରେ ଚାକର ନ ଦେଖି କମଳୀଙ୍କ ବ୍ରହ୍ମରନ୍ଧ୍ର ଜଳିଗଲା । ବାବୁ ଘରେ ଗୋଡ଼ ଦେଉ ନ ଦେଉ ସେ ପରମାଣୁ ବୋମା ପରି ଗର୍ଜିଉଠି କହିଲେ, "ଚାକର କାହିଁ ? ମୋତେ ପୋଲ ଫାଙ୍କିଆ ପାଇଛ କି ? ସବୁଦିନ ଖଟାଇ ଖଟାଇ ମାରୁଥିବ ।"

ବାବୁ କିଛି ନ କହି ଘରଭିତରକୁ ପଶିଗଲେ । ନା, ଆଉ ବେଶୀ ସହ୍ୟ ହେବ ନାହିଁ । ଆଜି କିଛି ନା କିଛି ବ୍ୟବସ୍ଥା କରିବାକୁ ହେବ । ଯେ କୌଣସି ପ୍ରକାରେ ଆଜି କବଚଧୁଆ ପାଣି ଟୋପାଏ ପିଆଇ ଦେଇ କବଚଟା ହାତରେ ବାନ୍ଧିଦେବା ନିତାନ୍ତ ଦରକାର । ତା ପରେ ତ କାମ ଫତେ । କମଳୀ ନିହାତି ମଲମୂଷା ପରି ହୋଇଯିବ । ବମ୍ ବୋଲି କହିଲେ ବସିବ; ଉଠ୍ ବୋଲି କହିଲେ ଉଠିବ ।

ସେ ପକେଟଭିତରୁ କବଚଟିକୁ ବାହାର କରି କାଳୀମନ୍ତ୍ରରେ ସାତ ଥର ଧୋଇଦେଲେ । ସେ ପାଣିତକ ଧରି କମଳୀ ପାଖରେ ଯାଇ ହାଜର । ସେ ଭଲରୂପେ ଜାଣନ୍ତି ଯେ, କମଳୀ କେବେ ହେଲେ ନିଜ ଇଚ୍ଛାରେ ଏହା ପିଇବ ନାହିଁ । ତେଣୁ ଜବରଦସ୍ତି ପିଆଇଦେବା ଆଶାରେ ସେ ଯାଇ କମଳୀଙ୍କୁ ତଳେ ପକାଇ-ଦେଲେ । ତାଙ୍କ ମୁଣ୍ଡକୁ କୋଳରେ ମାଡ଼ିବସି ଧରି ପାଣିତକ ତାଙ୍କ ପାଟିରେ ଗଳାଇ ଦେବାକୁ ଚେଷ୍ଟା କଲେ । କମଳୀ ଖୁବ୍

ବଡ଼ ପାଟିରେ ଗର୍ଜିଉଠିଲେ, "ମୋତେ ମାର ପକାଇଲ ହୋ ଧାଇଁ ଆସ ।"

ଦାଣ୍ଡ କବାଟ ଦୈବଯୋଗକୁ ମେଲ ଥିଲା । ସାଇର ବହୁତ ଲୋକ ଏ ବିକଳ ପାଟି ଶୁଣି ଘରଭିତରକୁ ପଶିଆସିଲେ । ବାବୁ ନିଜ ସ୍ତ୍ରୀଙ୍କୁ ମାଡ଼ ବସିଥିବାର ଦେଖି କେହି ମୁରୁକିହସା ଦେଲେ, କେହି ବା ରାଗିଗଲେ, କେହି ମୁରବିପଣିଆ ଦେଖାଇଲେ । କେହି ଭଦ୍ରତା ଶିକ୍ଷା ଦେବାକୁ ଯାଇ ଅବଳା ଉପରେ ଅତ୍ୟାଚାର କରିବା ଅସଭ୍ୟତା ବୋଲି ବୁଝାଇଲେ ।

ଏତେଗୁଡ଼ାଏ ଲୋକଙ୍କୁ ଦେଖି ବାବୁ ରାଗରେ କମ୍ପି-ଉଠିଲେ । ଅଯାଚିତ ଉପଦେଶର ପ୍ରତିବଦଳରେ ଘର ଛାଡ଼ି ବାହାରିଯିବା ପାଇଁ ହାକିମୀ ମିଜାଜରେ ଧମକ ଦେଲେ ।

ଏଥିରେ ଫଳ ଓଲଟା ହେଲା । ଲୋକେ ରାଗିଯାଇ ବାବୁଙ୍କ ଉପରକୁ କୁଦି ପଡ଼ିଲେ । ବାବୁ ମଦ ଖାଇ ଆସି ନିଜ ସ୍ତ୍ରୀ ଉପରେ ଅତ୍ୟାଚାର କରୁଅଛନ୍ତି, ତାଙ୍କୁ ମାରଦେବା ପାଇଁ ଜବରଦସ୍ତି ବିଷ ଖୁଆଉଅଛନ୍ତି, ତାର ପ୍ରମାଣ ହାତେ ହାତେ— ଏହା ସିଦ୍ଧାନ୍ତ କରନେଲେ । ବାବୁଙ୍କୁ ସେଠାରୁ ଟେକି ନେଇ ଗୋଟାଏ ଘରଭିତରେ ପୂରାଇଦେଲେ । କମଳୀ ଏଥିରେ ପୂରା ମାତ୍ରାରେ ଯୋଗଦେଲେ । ନିଶା ଛାଡ଼ିବା ପାଇଁ ବାବୁଙ୍କ ମୁଣ୍ଡରେ ଦଶ ବାଲ୍ଟି ପାଣି ଢଳାଗଲା । ବାନ୍ତି କରାଇବା ପାଇଁ ନାନା ପ୍ରକାର ଔଷଧ ପିଆଇବାର ବ୍ୟବସ୍ଥା ହେଲା । "ମୁଁ ପ୍ରକୃତିସ୍ଥ ଅଛି" ବୋଲି ବାବୁ ଯେତେ ପାଟି କଲେ ମଧ୍ୟ ସେ କଥା ଶୁଣୁଛି କିଏ ?

କ୍ରମେ ଅନ୍ଧାର ହୋଇଆସିଲା । ଲୋକେ ଥକ୍କା ହୋଇ ନିଜ ନିଜ ଘରକୁ ଫେରିଗଲେ । ବାବୁ ଯେପରି ଆଉ ଅତ୍ୟାଚାର ନ କରନ୍ତି, ସେଥିପାଇଁ ତାଙ୍କ ଗୋଡ଼ ହାତ ବାନ୍ଧି ପଲଙ୍କରେ ଶୁଆଇଦେଇ ଗଲେ ।

ବହୁ ସମୟ ଶ୍ରୀଚରଣବାବୁ ନିସ୍ତେଜ ହୋଇ ପଡ଼ିରହିଲେ । ଘରଆଡ଼ ଶୂନଶାନ୍ ହେଲା । ତାଙ୍କ ମୁଣ୍ଡର ଭାବନା ମଧ୍ୟ କ୍ରମେ ଶୂନ୍ୟ ହୋଇଆସିଲା ।

ସେ ବହୁ ଚେଷ୍ଟାପରେ ନିଜର ବନ୍ଧନ ଫିଟାଇଲେ । କମଳୀଙ୍କ ଆଡ଼କୁ ଚାହିଁବାକୁ ତାଙ୍କର ଆଉ ଇଚ୍ଛା ହେଲା ନାହିଁ । ଚୂପ୍ ହୋଇ ଘରୁ ବାହାରି କାଳୀମନ୍ଦିର ଆଡ଼କୁ ଚାଲିଲେ ।

ପ୍ରଣାମର ଗତସବୁ ଭୁଲିଯାଇ, ପୂର୍ବ ପରି ନାକ କାନ ମୋଡ଼ ନ ହୋଇ ସେ ପ୍ରଥମେ ଲମ୍ବ ହୋଇ ଶୋଇପଡ଼ିଲେ । ମନେ ମନେ କଅଣ ପ୍ରାର୍ଥନା କରୁଥିଲେ, ତାହା ସେ ଜାଣନ୍ତି । ବହୁ ସମୟ ସାଷ୍ଟାଙ୍ଗ ମୁଣ୍ଡିଆ ମାରି ଉଠି ଦେବୀଙ୍କ ଆଡ଼କୁ ଏକ ଧ୍ୟାନରେ ଚାହିଁ ରହିଲେ— ଦେବଦେବ ମହାଦେବ ଚିତ୍ ହୋଇ ତଳେ ପଡ଼ି ରହିଅଛନ୍ତି । ଦେବୀ ତାଙ୍କ ଛାତି ଉପରେ ଗୋଇଠା ମାରି ନାଚୁଛନ୍ତି । ମୁହଁରେ ଜିଭ ପୂରିରହିଛି, ଆଖି ଦୁଇଟା ଲାଲ, ଜିଭ ଲହଲହ ।

ତାଙ୍କର ହଠାତ୍ ମନେ ହେଲା, ସେ ଯେପରି ମହାଦେବ ହୋଇ ତଳେ ପଡ଼ି ରହିଅଛନ୍ତି । ତାଙ୍କ କମଳୀ କାଳୀ ରୂପରେ ତାଙ୍କ ଛାତି ଉପରେ ଚଢ଼ି ଗୋଇଠା ମାରି ତାଙ୍କୁ ସବାଡ଼ କରୁଛି ।

ଶ୍ରୀଚରଣବାବୁ ଚମକି ପଡ଼ିଲେ । ଆଉ ଥରେ ମୁଣ୍ଡିଆ ମାରି ଉଠି ବସି କହିଲେ, "ମା, ମୋର ମସ୍ତବଡ଼ ଭୁଲ ହୋଇଛି । ସବୁ ସ୍ତ୍ରୀ ଜାତି ସମାନ । ତୁ ତ ନିଜ ସ୍ୱାମୀର ଛାତି ଉପରେ ଠିଆ ହୋଇ ନାଚୁଛୁ । ତା ତୁଳନାରେ ମୋ କମଳୀ କଅଣ ବା କରିଛି ? ତୋ ଆଗରେ ସ୍ତ୍ରୀକୁ ଯବତ କରିବା ପାଇଁ ଅଳି କରିବା ମୋ ପକ୍ଷରେ ଉଚିତ ହୋଇ ନାହିଁ । କ୍ଷମା କର ମା, ଆଉ କେବେ ହେଲେ ତୋ ପାଖରେ ସ୍ତ୍ରୀକୁ ଯବତ କରିବା କାମନା କରିବି ନାହିଁ, ସ୍ତ୍ରୀ ବିରୁଦ୍ଧରେ ଗୁହାରି ଆଣିବି ନାହିଁ । ମୋର ଏଣିକି ଏକମାତ୍ର କାମନା ହେବ, ପର ଜନ୍ମରେ ମୁଁ ଯେପରି ଗୋଟିଏ ସ୍ତ୍ରୀ ଲୋକ ହୁଏଁ ।"

---

## ଗୋବର୍‌ଧନ୍‌ ବାବୁ

ଆମ ଗୋବରଧନ୍‌ବାବୁଙ୍କୁ ଚହ୍ନି ନାହିଁ ?

ହଁ, ହଁ, ସେଇ ଗୋବରା ? ସେ କଅଣ ଆଉ ଏଇଲାଗେ ଗୋବରା ହୋଇ ଅଛି ? ବର୍ତ୍ତମାନ ସେ ଗୋବର୍‌ଧନ୍‌ବାବୁ । ମୁଣ୍ଡରେ ଗାନ୍ଧି ଟୋପି, ଆଖିରେ ନେଳୀ ଚଷମା, ମୁହଁରେ ଗାମ୍ଭୀର୍ଯ୍ୟମିଶ୍ରିତ ମୁରୁକିହସ, . ଦେହରେ ହାଓ୍ୱାଇ ସାର୍ଟ, ଗୋଡ଼ରେ ଲୁଜ ପ୍ୟାଣ୍ଟ, ପାଦରେ କାବୁଲି ସାଣ୍ଡେଲ୍ । ଏ ଯୁଗର ପୂରା ଦସ୍ତୁର ବାବୁ । ଶଶୁରଘରୁ ଯଉତୁକ ମିଳିଥିବା ସାଇକେଲ ଖଣ୍ଡି ତ ତାର ସହଚର । ତା ସାଙ୍ଗକୁ ପକେଟରେ ନୋଟ ବହି, ଫାଉଣ୍ଟେନ୍ କଲମ ।

କଅଣ ମିଛ ବୁଝୁଛ ? ଗୋବରା, ତାର ପୁଣି ଶଶୁର ଘର, ଶଶୁରଘରୁ ଯଉତୁକ ମିଳିଥିବା ସାଇକେଲ—ଏଗୁଡ଼ାକ ଅସମ୍ଭବ ଲାଗୁଛି । କିନ୍ତୁ ମିଛ କହିବା ମୋ କୋଷ୍ଠୀରେ ନାହିଁ । ଗୋବରାର ସେହି ଶଶୁର ଆଉ ଶଶୁରଙ୍କ ଯଉତୁକ କଥା ତ କହୁଛି ।

ଗୋବରାକୁ କ ଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷରତକ ଆୟୁତ୍ତ କରିବାକୁ ଲାଗିଯାଇଥିଲା ପୂରା ପାଞ୍ଚ ବର୍ଷ । ତା ପରେ ମାତ୍ରା କେତୁଟା ହାସଲ ହେଲା ବହୁ କଷ୍ଟରେ । କିନ୍ତୁ ସେ ବେଆଡ଼ା ଯୁକ୍ତାକ୍ଷରଗୁଡ଼ାକ ଆଉ କୌଣସିମତେ ହୃଦ୍‌ଗତ ହୋଇପାରିଲା ନାହିଁ । ତା ସହିତ କୁସ୍ତି କସରତ୍ କରୁଁ କରୁ ଆସିଗଲା ସ୍ୱାଧୀନତା ଆନ୍ଦୋଳନ । ଗୋବରା ପାଠ ଛାଡ଼ି ହେଲା କର୍ମୀ । ମା ସରସ୍ୱତୀ ହାହି ପାଇଗଲେ । ଗୋବରା ଗାଁ ଗାଁ ବୁଲି ଢେଙ୍ଗୁରା ପିଟିଲା, ସଭା

କରାଇଲା । କ୍ରମେ କର୍ମୀ ପାହାଚ ଉପରକୁ ଉଠି ସେ ହେଲା ନେତା । ସ୍ଥାନେ ସ୍ଥାନେ ସଭା ସମିତି କଲା, ବକ୍ତୃତା ଦେଲା । "ଇଂରେଜ, ଏ ଦେଶ ଛାଡ଼" ଧ୍ୱନି କଲା, ଶେଷକୁ ଜେଲ ଗଲା ।

ମୁଁ ଠିକ୍ ଜାଣେ, ସେ ଯେଉଁ ଦିନ ଜେଲ ଗଲା, ସେ ଦିନ ତା ବାପା କଣ୍ଟକଚଣ୍ଡୀଙ୍କ ପାଖରେ ଦୁଇ ପଇସାର ଭୋଗ ଲଗାଇ-ଥିଲେ । ଠାକୁରାଣୀଙ୍କ ପାଖରେ ମୁଣ୍ଡିଆ ମାରି ଜଣାଣ କରିଥିଲେ, "ମା, ଏତିକ ସୁଦୟା କର । ଗୋବରା ଆଉ ଜେଲରୁ ନ ଫେରୁ ।"

କିନ୍ତୁ ଠାକୁରାଣୀ ତାଙ୍କ କଥା ଶୁଣିଲେ ନାହିଁ । ତିନି ବର୍ଷ ପରେ ଗୋବରା ଜେଲରୁ ଖଲାସ ହେଲା । ସେ ଆଉ ସେତେ-ବେଳକୁ ଗୋବରା ହୋଇ ନାହିଁ ; ପ୍ରତିମାନଙ୍କରେ ଗୋବରଧନ୍ ବାବୁ । ଜେଲ ଫାଟକରୁ ବାହାରିଲାକ୍ଷଣି ତାରି କି ଆଦର ! ଫୁଲମାଳରେ ବେକ ପୋତି ହୋଇପଡ଼ିଲା । 'ଗୋବରଧନ୍-ବାବୁଙ୍କ ଜୟ' ଧ୍ୱନିରେ ଗଗନ ପବନ ଥରିଉଠିଲା ।

ଦୁଇ ଦିନ ଯାଏ ବହୁ ଲୋକ ଗୋବର୍ଧନ୍ ବାବୁଙ୍କ ପାଖକୁ ଗଲେ । ଜଳଖିଆ, ମଧ୍ୟାହ୍ନଭୋଜନ, ରାତ୍ରିପାଳଣା ଆଦିରେ ନିମନ୍ତ୍ରଣ କଲେ । ଗୋବର୍ଧନ୍ ବାବୁ ଓ ତାଙ୍କ ବାପା ବି ଭାବିଥିଲେ, ଏହିପରି ବୋଧହୁଏ ଦିନଗୁଡ଼ାକ କଟିଯିବ । ମାତ୍ର ଦୁଇ ଦିନରୁ ବେଶୀ କଟିଲା ନାହିଁ । ତୃତୀୟ ଦିନଠାରୁ ଘରେ ସବୁ ଭୋଜନର ବ୍ୟବସ୍ଥା ହେବାର ଦେଖି ବାପା ପ୍ରମାଦ ଗଣିଲେ । ଆଉ ଘରେ ବସାଇ ନେତା କରାଇ ଦେଲେ ନାହିଁ । କହିଲେ, ମୋ ସାଙ୍ଗରେ ଆସି ହଳ ଲଗ, ନ ହେଲେ ଅନ୍ୟଠାରେ ଯାଇ ନେତା ସାଜ ।

ସକାଳୁ ସଞ୍ଜଯାଏ ଖାଟି ଯେଉଁ ଦୁଇ ପଇସା ମୁଁ ଆଣୁଛି, ସେଥିରେ ତୋତେ ଭାଗ କରିବାକୁ ମୋର ବଳ ନାହିଁ ।

ଗୋବର୍ଦ୍ଧନ୍‌ବାବୁଙ୍କୁ ମୂଳ ଲଗିବାକୁ ଅଡ଼ୁଆ ଲାଗିଲା । ଏଣେ ବାପାଙ୍କ ଜୁଲମ ଅତ୍ୟଧିକ ବଢ଼ିଲା । ବାଧହୋଇ ସେ ଖଣ୍ଡେ ଗୃହକର ଖୋଜିବୁଲିଲେ । ସେଥି ପାଇଁ ବାର ଦୁଆର ଶୁଣ୍ଢିପିଣ୍ଡା ହେଲେ ।

ସେତେବେଳେ କଟକ ମ୍ୟୁନିସିପାଲିଟିରେ କମିଶନରମାନେ ସର୍ବେସର୍ବା । ଜଣେ କମିଶନର ଗୋବର୍ଦ୍ଧନ୍‌ବାବୁଙ୍କ ସହିତ ଜେଲରେ ଥିଲେ । ଗୋବରଧନ୍‌ବାବୁ ଯାଇ ତାଙ୍କୁ ଧଇଲେ । କମିଶନର ପ୍ରସ୍ତାବ ଦେଲେ, ତୁମେ ଯଦି ମୋ ଝିଅକୁ ବାହା ହେବାକୁ ରାଜି ହେବ, ତେବେ ମୁଁ ମ୍ୟୁନିସିପାଲିଟିରେ ଖଣ୍ଡେ ଗୃହକର କରାଇଦେବି ।

ଅବଶ୍ୟ ମୋର କହିବା ଭଦ୍ରତା ହେବ ନାହିଁ, ତଥାପି ଲୁଚେଇ ବା କଅଣ ହେବ ? କମିଶନରଙ୍କ ଝିଅଟି ଦେଖିବାକୁ ସୁନ୍ଦରୀ, ହେଲେ ଆଗଦାନ୍ତ ଦୁଇଟା ଟିକିଏ ବଡ଼ ବଡ଼—ଦେଢ଼ ଆଙ୍ଗୁଳ ଲେଖାଏଁ ଉପରକୁ ଉଠିଆସିଛି । କଳା ପାଉଁଶିଆ ମୁହଁରେ ଯେଉଁ ପଣେ ଦୁଇ ପଣ ବସନ୍ତଦାଗ ରହିଛି, ତାହା ବଦନର ସୌନ୍ଦର୍ଯ୍ୟକୁ ବଢ଼ାଉଛି ସିନା, ତିଳେ ହେଲେ କ୍ଷୁନ୍ନ କରୁ ନାହିଁ । ପାଟିଟା ଟିକିଏ ଖର, କିନ୍ତୁ ସେ ଲକ୍ଷ୍ମୀବନ୍ତି, କାମିକା ।

ଗୋବର୍ଦ୍ଧନ୍‌ବାବୁ ବାହାହେବାକୁ ରାଜି ହେଲେ ଏହି ସର୍ତ୍ତରେ ଯେ, ତାଙ୍କୁ କମିଶନରର ଖଣ୍ଡେ ଚାକିରି କରାଇ ଦେବେ ।

କମିଶନର ଚେୟାରମ୍ୟାନଙ୍କ ପାଖକୁ ଦଉଡ଼ ଧାପଡ଼ କଲେ । ସବୁ କଥାରେ ଚେୟାରମ୍ୟାନଙ୍କ ସପକ୍ଷରେ ଭୋଟ ଦେବାକୁ ଶପଥ ନେଲେ । ଚେୟାରମ୍ୟାନ୍ କମିଶନରଙ୍କ ଉପରେ ସନ୍ତୁଷ୍ଟ ହୋଇ ଗୋବର୍ଦ୍ଧନ୍‌ବାବୁଙ୍କ ପାଇଁ ଗୋଟିଏ ଚାକିରି ସୃଷ୍ଟି କଲେ । ଗୋବର୍ଦ୍ଧନ୍‌ବାବୁ ଟାଉନର ସୁପରଭାଇଜର ହେବେ । ସବୁ ଅଞ୍ଚଳ ବୁଲି କେଉଁଠି କଅଣ ଘଟିଛି, ତାର ରିପୋର୍ଟ ଦେବେ । ତାଙ୍କ ବିଦ୍ୟାକୁ ଚାହିଁ ଚାକିରିର କାମ ସ୍ଥିର ହୋଇଗଲା । ସହରରେ ବୁଲିବା ପାଇଁ ତାଙ୍କର ଖଣ୍ଡେ ସାଇକେଲ ତ ନହାଁ ଦରକାର । ଚେୟାରମ୍ୟାନ ସର୍ତ୍ତ ଦେଲେ, କମିଶନର ଯଦି ଖଣ୍ଡେ ସାଇକେଲ ଦିଅନ୍ତି, ତେବେ ଗୋବର୍ଦ୍ଧନ୍‌ବାବୁଙ୍କୁ ଏ ଚାକିରି ଖଣ୍ଡିକ ମିଳିବ ହିଁ ମିଳିବ ।

ଶେଷକୁ ସବୁ ସୁରୁଖୁରୁରେ ତୁଟିଗଲା । କନ୍ୟାରତ୍ନ ଦକ୍ଷିଣା ସହ ସାଇକେଲ ଦାନ କରି କମିଶନର ଯେମିତି ଖୁସି, ଗୋବର୍ଦ୍ଧନ୍‌ବାବୁ ଚାକିରି ପାଇ, ଚାକିରି ଲାଗି ସାଇକେଲ ପାଇ ଓ ସାଇକେଲ ଲାଗି ଆଉ ଗୋଟିଏ ପେଟ ପୋଷିବାକୁ ପାଇ ତାଠାରୁ ବେଶୀ ଖୁସି ।

ଗୋବର୍ଦ୍ଧନ୍‌ବାବୁ ସାଇକେଲରେ ସହରଯାକ ବୁଲନ୍ତି । ଯେଉଁଠି ଯାହା ଘଟିଥାଏ, ତାହା ନୋଟ ବହିରେ ଲେଖିଆଣି ଚେୟାରମ୍ୟାନଙ୍କ ପାଖରେ ରିପୋର୍ଟ କରନ୍ତି ।

ଶୁକ୍ରବାର ଗରବା ମାସ ପୂର୍  ନାହିଁ । ଗୋବର୍ଦ୍ଧନ ବାବୁ ଖୁସ୍ ମିଜାଜରେ ସାଇକେଲରେ ବସି ଷ୍ଟେସନ ଆଡ଼କୁ ମୁହାଁଇଛନ୍ତି । ବୈଶାଖ ମାସ, ଦି ପହର । ମୁହଁରୁ ଧାର ଧାର ଝାଳ ବହି ପଡ଼ୁଛି । ସେ ଗୁଣୁଗୁଣୁ ଗୀତ ଗାଉଅଛନ୍ତି—"ପ୍ୟାରୀ, ମେରୀ ପ୍ୟାରୀ-ଇ-ଇ- ।" ଆଖିରେ ଆନନ୍ଦର ଜ୍ୟୋତି, ମୁହଁରେ ସାଫଲ୍ୟର ହସ । ମନଭିତରେ କେତେ ଯେ ସୁଖ-କଳ୍ପନା ଓଲଟ ପାଲଟ ହୋଇ ଲହଡ଼ି ଖେଳୁଛି, ତାହା ବା କିଏ କହିବ ?

ଯାଉଯାଉ ବାଟରେ ହଠାତ୍ ରାସ୍ତାକଡ଼କୁ ଆଖି ପଡ଼ିଗଲା । ରାସ୍ତାକଡ଼ରେ ଗୋଟାଏ ଷଣ୍ଢ ମରିପଡ଼ିଛି । ସାଙ୍ଗେ ସାଙ୍ଗେ ସେ ସାଇକେଲରୁ ଓହ୍ଲାଇ ପଡ଼ିଲେ । ଖାତାରେ ଏହା ଟିପା ହେବା ଦରକାର । ପକେଟରୁ ନୋଟ ବହି, ଝର କଲମ ବାହାର କଲେ । ଟିପରେ ଛେପ ଲଗାଇ ବହି ଓଲଟାଇ ଦେଇ ଗଲେ । ସେଠାରେ ଥିବା ପାନ ଦୋକାନୀକୁ ଯାଇ ପଚାରିଲେ, "ଏ ଜାଗାର ନାଁ କଅଣ ? ଏ ଷଣ୍ଢ କାହାର ?"

ଦୋକାନୀ କହିଲା—ଏ ଜାଗା ନାଁ ଝାଞ୍ଜିରମଙ୍ଗଳା । ଏ ଷଣ୍ଢଟା ବ୍ରହ୍ମେଶ୍ୱର ମହାଦେବଙ୍କର ।

ବାବୁ ଲେଖିବାକୁ ଆରମ୍ଭ କଲେ 'ଝା' । ଆରେ, 'ଞ୍ଜି' ଟା କେମିତି ହେବ ? ଯୁକ୍ତାକ୍ଷରଗୁଡ଼ାକ ତ ଆସୁ ନାଉ ସାଧୁଲେ । ପୁଣି ଗୋଟାଏ 'ଙ୍ଗ' ଅଛି । ତେଣେ ପୁଣି 'ଷଣ୍ଢ' ଓ 'ବ୍ରହ୍ମେଶ୍ୱର' ମହାଦେବ । ମଲା ଯା, ଏଗୁଡ଼ାକ ତ ଲେଖିଆସିବ ନାହିଁ । କଅଣ ସବୁ ଯୁକ୍ତାକ୍ଷରଯାକ ଏହି ସ୍ଥାନରେ ମେଳ ବାନ୍ଧିଛନ୍ତି !

ପ୍ରଥମେ ବାବୁ ଦୋକାନୀ ଉପରେ ବୁଢ଼େ ରାଗିଗଲେ, ଏପରି ଅଖାଡ଼ୁଆ ନାଁ ଏ ଜାଗାଟାର କାହିଁକି ହୋଇଛି ?

ତା ପରେ ଠିଆହୋଇ କିଛି ସମୟ ଭାବିଲେ । କଲମ ପଛ କାମୁଡ଼ିଲେ, ତଳ ଉପରକୁ ଅନାଇଲେ, ମୁଣ୍ଡ ବାଳ ସାଉଁଳିଲେ । ଶେଷକୁ ସେହି ବାଳତଳେ ଥିବା ମଗଜରୁ ଗୋଟାଏ ବୁଦ୍ଧି ବାହାରିପଡ଼ିଲା ।

ସେ ସାଇକେଲଟା ରାସ୍ତାପାଖ ବରଗଛକୁ ଆଉଜାଇ ଦେଲେ । ଦୋକାନୀଠାରୁ ପୁଳାଏ ଦଉଡ଼ି ମାଗିଆଣି ମଲା ଷଣ୍ଢର ପଛଗୋଡ଼ ଦୁଇଟା ବାନ୍ଧିଲେ, ଦଉଡ଼ାକୁ କାନ୍ଧରେ ପକାଇ ଟାଣି ଟାଣି ପଛକୁ ଫେରିଲେ ।

କଥା ହେଲା, ସେଥିରେ ପୁଣି ଫୁଲସାର୍ଟ ବାବୁ ଜଣେ ମଲା ଷଣ୍ଢଟାକୁ ଘୋସାରି ଘୋସାରି ନେଉଅଛନ୍ତି । ଷଣ୍ଢଟା କେଉଁଦିନୁ ମରି ପଚି ଗନ୍ଧ ଛୁଟିଲାଣି । ପୁଣି ଏଡ଼େ ଭାରି ଯେ, ଚାରି ଜଣ ଲୋକ ତାକୁ ଘୋସାରିନେବା କଷ୍ଟ । ସବୁ ଶକ୍ତି ପ୍ରୟୋଗ କରି ଦାନ୍ତ କାମୁଡ଼ି ବାବୁ ତାକୁ ଘୋସାରି ଘୋସାରି ନେଉଥାଆନ୍ତି ।

ରାସ୍ତା କଡ଼ର ଲୋକେ ଏ ଦୃଶ୍ୟ ଦେଖି ପେଟଭରି ହସିବାକୁ ଲାଗିଲେ, ଗୋବର୍ଦ୍ଧନ ବାବୁ ଆଖି ବୁଜି ସେତିକି ଜୋରରେ ଘୋସାରି ଘୋସାରି ନେଲେ । କେହି କହିଲା ପାଗଳ, କେହି ବା ଘଟଣା କଅଣ କିଛି ବୁଝି ନ ପାରି ଆଶ୍ଚର୍ଯ୍ୟ ହୋଇଗଲା । ପିଲାମାନେ ତାଳି ମାରି, ହଲ୍ଲା କରି ତାଙ୍କ ପଛେ ପଛେ ଚାଲିଲେ ।

ବହୁ କଷ୍ଟରେ ବାବୁ ଆସି ଚଉଧୁରୀ ବଜାରରେ ପହଞ୍ଚିଲେ । ସେଇଠି ଦଉଡ଼ା ଗୁଡ଼େଇ ଆଗ ମୁହଁରୁ ଝାଳଟକ ପୋଛି ପକାଇଲେ । ତା ପରେ ତାଙ୍କ ଆନନ୍ଦ ଦେଖେ କିଏ ? ଯୁକ୍ତାକ୍ଷର ତାଙ୍କ ସାଧ୍ୟ ନା ! ନୋଟବହି ବାହାର କରି ରିପୋର୍ଟ ଲେଖିଲେ, "ଚଉଧୁରୀ ବଜାରରେ ଖାସୁ ହୋଇ ନ ଥିବା ଗୋଟିଏ ବଳଦ ମରିପଡ଼ିଛି ।"

ତା ପରେ ମନେ ପଡ଼ିଗଲା ସାଇକେଲ କଥା । ପୁଣି ଝାଞ୍ଜିରମଙ୍ଗଳା ଆଡ଼େ ଫେରିଲେ । ମାତ୍ର ଆସି ଦେଖନ୍ତି, ବରଗଛ ମୂଳ ଖାଲି । ବହୁତ ଖୋଜିଲେ, ମାତ୍ର ସାଇକେଲ ପାଇଲେ ନାହିଁ । ବର୍ତ୍ତମାନ ତାଙ୍କର ଭାବନା, ସାଇକେଲ ତ ଗଲା, ଫଳରେ ଚାକିରିଖଣ୍ଡିକ ଯିବ । ତେବେ ସେ ଆଜି କମିଶନରଙ୍କ ଦୁହିତାଙ୍କୁ ପୋହିବେ କାହିଁକି ? କପରି ବା ପୋଷିବେ ?

ତାଙ୍କ ପରି ବୁଦ୍ଧିମାନ ବହୁତ କଥା ଭାବି ସ୍ଥିର କଲେ । କିନ୍ତୁ ଏହି ଗୋଟାଏ କଥାର କୂଳକିନାରା ସେ ପାଉ ନାହାନ୍ତି— ଯେ ସାଇକେଲ ନେଲା, ସେ ସାଇକେଲ ଦେଇଥିବା କମିଶନରଙ୍କ କନ୍ୟାରତ୍ନଙ୍କୁ ନ ନେଲା ବା କାହିଁକି ?

———

# ଜୀବନସାଥୀ

ସେଦିନ ଖବରକାଗଜ ସହର ମଫସଲ ସବୁଆଡ଼େ ଗୋଟାଏ ଚହଳ ପକାଇଦେଲା । ହୁଏ ତ ରୁଷିଆ ବର୍ଲିନ ଦଖଲ କରିସିବା କି ଚର୍ଚ୍ଚିଲ-ଷ୍ଟାଲିନ ହିଟଲରଙ୍କୁ କୋଳାଗ୍ରତ କରିବା ସମ୍ବାଦ ଲୋକଙ୍କ ଭିତରେ ଏତେ ଚହଳ ପକାଇପାରି ନ ଥିବ । ଏ ଚହଳ ପୁଣି ସାମାନ୍ୟ ଗୋଟାଏ ବିଜ୍ଞାପନ ଲାଗି ! ସେଦିନ ଅନ୍ୟ ସଂଖ୍ୟା ଅପେକ୍ଷା ହଜାର ହଜାର କପି ଅଧିକା ବିକ୍ରି ହେବାକୁ ଲାଗିଲା । ଖବରକାଗଜ ଅଫିସରେ ଯେ ଭିଡ଼ ହୋଇ ନ ଥିଲା, ତା ନୁହେ । ବିଜ୍ଞାପନଟି ଏହି—

ସାଥୀ ଆବଶ୍ୟକ !

ସପ୍ତବିଂଶ ବର୍ଷ ବୟସ୍କା କୌଣସି ଶିକ୍ଷିତା ସାହିତ୍ୟ-ରସିକା କୁମାରୀଙ୍କ ପାଇଁ ଜଣେ ଆଜୀବନ ସାଥୀ ଦରକାର । କୁମାରୀଙ୍କର ମଫସଲରେ ଯଥେଷ୍ଟ ସମ୍ପତ୍ତି ଅଛି ଓ ନଗଦ ମଧ୍ୟ କିଛି ଟଙ୍କା ଅଛି । କୁମାରୀ ଜନ୍ମଦିନରୁ ପବିତ୍ର କୌମାର୍ଯ୍ୟବ୍ରତ ପାଳନ କରି ଏପର୍ଯ୍ୟନ୍ତ ନିଃସଙ୍ଗ ଜୀବନ କଟାଉଅଛନ୍ତି । ସାଥୀଙ୍କର ବୟସ ପଚିଶବର୍ଷରୁ ଊର୍ଦ୍ଧ୍ୱ ହେବା ଦରକାର ।

ଯେଉଁମାନେ ଏଥିପାଇଁ ପ୍ରାର୍ଥୀ ହେବାକୁ ଇଚ୍ଛାନ୍ତି, ସେମାନେ ଶୀଘ୍ର ଫଟୋ ସହ ଆବେଦନ କରନ୍ତୁ । ଆବେଦନପତ୍ର ସହିତ ୫୦ ୍୍/୯ର ଡାକଟିକଟ ଥିଲେ ମନୋମିତ ପ୍ରାର୍ଥୀଙ୍କ ପାଖକୁ କୁମାରୀଙ୍କ ଫଟୋ ରେଜେଷ୍ଟ୍ରି ହୋଇ ପଠାଯିବ ।

ବକ୍ସ ନମ୍ବର ୫୭୫

ଏହି ବିଜ୍ଞାପନ ପଢ଼ି ମାନ୍ତବାଗୀଶମାନେ ଯେପରି ନାକ ଟେକଲେ, ସଂସ୍କାରପ୍ରିୟମାନେ ସେହିପରି ଧନ୍ୟବାଦ ଅର୍ପଣ କରିବାକୁ ଲାଗିଲେ । ସ୍କୁଲ କଲେଜ ଛାତ୍ରଙ୍କଠାରୁ ଆରମ୍ଭ କରି ଖଦଡ଼ ବେଶଧାରୀ, ବାଡ଼ିଧରାଠାରୁ ମୁଣାଧାରୀ ନେତାପର୍ଯ୍ୟନ୍ତ, ଏ.ଆର୍.ପି. ମେସେଞ୍ଜରଙ୍କଠାରୁ ସିଭିଲ ସପ୍ଲାଇଜ୍ ଅଫିସର ପର୍ଯ୍ୟନ୍ତ ସମସ୍ତଙ୍କ ମଧ୍ୟରେ ଗୋଟାଏ ଉତ୍ତେଜନା ଖେଳିଗଲା ।

ସନାତନୀମାନେ କହି ବୁଲିଲେ, "ଦେଶ ଉଚ୍ଛନ୍ନ ହେଲା, ହିନ୍ଦୁଧର୍ମ ଲୋପ ପାଇଗଲା"—ସତେ ଯେପରି ହିନ୍ଦୁଧର୍ମଟା ଭୁଲା ଖୋଳ ଭିତରେ ଥିବା ଅଙ୍ଗୁର ଫଳ; ଟିକେକେ ନଷ୍ଟ ହୋଇଯିବାର କଥା ।

ବୁଢ଼ା ଦରବୁଢ଼ାମାନେ କହିଲେ, "ମାଳିକାରେ ପରା ଲେଖା ଅଛି—'ବିଧବା ହେବେ ସ୍ୱୟମ୍ବର, ନ ଥିବ ବେଦର ବିଚାର ।' ତା କଅଣ ମିଛ ହୁଅନ୍ତା ?"

କଂଗ୍ରେସିଆମାନେ ଆଲୋଚନା କଲେ, "ଦେଶର ଏ ଜୀବନମରଣ ସମସ୍ୟା ବେଳେ, ଭାରତମାତା ସାମ୍ରାଜ୍ୟବାଦୀଙ୍କ କବଳରେ ରହି ଚପି ହୋଇ ଯାଉଥିବା ସମୟରେ, ସ୍ତ୍ରୀ ପୁରୁଷ ସ୍ୱାଧୀନତା ପାଇଁ ଜୀବନ ଦଅନ୍ତେ କଅଣ, ଜୀବନସାଥୀ ଖୋଜି ବୁଲିଲେଣି; ଏ ଦେଶର କଅଣ କସ୍ମିନ୍‌କାଳେ ହେଲେ ଉନ୍ନତି ହେବ ?"

କମ୍ରେଡ଼ମାନେ ଦଳ ଦଳ ହୋଇ [illegible] ପତାକା ଉଡ଼ାଇ ପ୍ରଚାର କଲେ, "ନ୍ୟସ୍ତସ୍ୱାର୍ଥ ପୁଞ୍ଜିପତିମାନେ ସାଧାରଣଙ୍କୁ ଶୋଷଣ

କରୁଛନ୍ତି; ମାଲିକମାନଙ୍କ ଅତ୍ୟାଗୃରରେ ଶ୍ରମିକ କଣ୍ଠାସାର ହେଲେଣି । ଦୁର୍ଭିକ୍ଷ ଦାଉରେ କୃଷୀ ମଜୁରିଆଙ୍କ ଅସ୍ଥି ରହିଲଣି । ଏତେବେଳେ ପଞ୍ଚମ ବାହିନୀଙ୍କର ଏପରି 'ରୋମାନ୍ସ' ଶୋଭାପାଏ ନାହିଁ । ଜାଗ ଦେଶବାସି, ଏହାର ପ୍ରତିବାଦ କର; ପ୍ରତିକାର କର ।"

ସ୍କୁଲ କଲେଜ ପିଲା, ଯୁବକ ବେକାର ଓକିଲ ଓ ଡାକ୍ତର, ନୂଆ ନିଯୁକ୍ତ ହାକିମହୁକୁମାମାନେ କିନ୍ତୁ ଏଥିରେ ଖୁସି ହୋଇଗଲେ । କୁମାରୀଙ୍କ ସାହସକୁ ଧନ୍ୟବାଦ ଦେଇ ପ୍ରଶଂସାମାନ କରିବାକୁ ଲାଗିଲେ । ସମ୍ପାଦକମାନେ କାଗଜରେ ନାନାପ୍ରକାର ଟିପ୍ପଣୀ ଦେଲେ । ସାହିତ୍ୟିକମାନେ ସନ୍ଦର୍ଭ ଲେଖିଲେ । କବି ରଞ୍ଜନ ମହାପାତ୍ର ତ କବିତା ଲେଖି ମେସ୍ ସାଥୀଙ୍କୁ ଶୁଣାଇଲେ—

"ହେ କୁମାରୀ, ହେ ଶିକ୍ଷିତା
ସାହିତ୍ୟ-ରସିକା,
ଧନ୍ୟ ତୁମେ ଖୋଜୁଅଛ
ଜୀବନସାଥିକା ।"
ଇତ୍ୟାଦି ଇତ୍ୟାଦି ।

ମୋଟ ଉପରେ ହାଟ ବଜାର, ସିନେମା ଥିଏଟର, କୋର୍ଟ କଚେରୀ ସବୁଆଡ଼େ ଗୋଟାଏ ହଇଚଇ ଖେଳିଗଲା ।

× × ×

ଯେତେବେଳେ ଚତୁର୍ଦ୍ଦିଗରେ ଏହିପରି ନିଆଁ ଜଳିଉଠିଛି, ସେତେବେଳେ ନିଆଁ ଲଗାଇ ଦେଇଥିବା ଗଣେଶକୁମାର

ମେଣିଆ ବଜାରର ଗୋଟିଏ କ୍ଷୁଦ୍ର ଗଳିରେ ଥିବା ଭଙ୍ଗା ଅ-ଭଡ଼ା ଘରେ ବସି ତାଙ୍କ ଅନ୍ତରଙ୍ଗ ବନ୍ଧୁ କବି ରଞ୍ଜନ ମହାପାତ୍ରଙ୍କ ସହିତ ଆଲୋଚନା ଚଳାଇଅଛନ୍ତି । ଶହ ଶହ ଦରଖାସ୍ତ ଫଟୋ ଓ ଟିକଟ ସହିତ ଘରଯାକ ଜମା ହୋଇଛି ।

ଗଣେଶକୁମାର ଦରଖାସ୍ତ, ଫଟୋକୁ ଅଲଗା ଗଦେଇଦେଇ ଟିକଟ ସଂଗ୍ରହ କରି ରଖୁ ରଖୁ କହିଲେ, "ତୁ ଭାଇ, ମୋତେ ଆଉ କିଛି ପଚାର ନାହିଁ । ତୁ ହେଲୁ କବି ଲୋକ; ସଂସାର ବିଷୟରେ ତୋର ଅଭିଜ୍ଞତା କେତେ ? ଏସବୁ ବ୍ୟବସାୟୀ କାଇଦା କଟକଣା ଅତି ଗୁହ୍ୟ; ତୁ ବୁଝିପାରିବୁ ନାହିଁ ।"

କିନ୍ତୁ ରଞ୍ଜନବାବୁ ଛାଡ଼ିବାର ପାତ୍ର ନୁହନ୍ତି, ସେ ଜିଦ୍ ଧରି କହିଲେ, "ନା, ମୋତେ ସବୁ କଥା କହ । ତୁ କହିବା ମୁତାବକ ମୁଁ ବିଜ୍ଞାପନ ଲେଖିଦେଲି । ଫଳରେ ହଜାର ଯାଏ ଦରଖାସ୍ତ ଆସି ତୋ ପାଖରେ ରୁଣ୍ଡ ହେଲଣି । ସେ କୁମାରୀ କିଏ— ଏତେବେଳେ କଅଣ ସୁଦ୍ଧା ମୁଁ ଜାଣିପାରିବି ନାହିଁ ?"

ଅନିଚ୍ଛା ସତ୍ତ୍ୱେ ବାଧ୍ୟ ହୋଇ ଗଣେଶକୁମାର କହିଲେ, "ସେ କୁମାରୀ ହେଉଛନ୍ତି କଟକ ବଡ଼ ହାସପାତାଳର ଜଣେ ନର୍ସ । ତାଙ୍କୁ ଦେଖି ମୁଁ ଲଭ୍‌ରେ ( ଲୋଭରେ ନୁହେ ) ପଡ଼ିଛି । ତାଙ୍କ ସହିତ ବିବାହ ହେବାର କଥା; ମାତ୍ର ସେଥିପାଇଁ ଧନ ତ କିଛି ଦରକାର । ତେଣୁ ମୁଁ ଏ ଉପାୟ ପାଞ୍ଚିଛି । ଦେଖୁଛୁ ତ, ଟିକଟ ଆକାରରେ କେତେ ପଇସା ଆସିଗଲଣି । ଏଥିରୁ ଶତକଡ଼ା ଦଶ ତୋର; କାରଣ ତୁ ବିଜ୍ଞାପନ ଲେଖିଦେଇଛୁ । ଶତକଡ଼ା ପନ୍ଦର କାଗଜ ସଂପାଦକଙ୍କର; ସେ ବିଜ୍ଞାପନ ଛପାଇଛନ୍ତି; ବାକିତକ କୁମାରୀଙ୍କର ଅର୍ଥାତ୍ ଆମ ବିଭାଘରର ଯୌତୁକ ।"

ରଞ୍ଜନବାବୁ ସାମାନ୍ୟ ଟିକଏ ବିରକ୍ତ ହେଲା ପରି କହିଲେ, "ମୁଁ ଲେଖିଦେଲି ବିଜ୍ଞାପନ, ତୁ ପାଇଲୁ ତୋଡ଼ା—ମଝିରେ ବାଳିଆ ପିଟିନେଲୁ । ମୋ ବେଳକୁ କଅଣ ନା ଶତକରା ଦଶ ! ତୁ ଯେଉଁଠି ପାଇବୁ ପାଞ୍ଚଶହ, ମୋର ସେଠି ପଚିଶ । ମୋ ଅପରାଧଟା ହେଲା କଅଣ ?"

"ଆରେ ତୋର ଅପରାଧ ନାହିଁ ଯେ, ତୋର ନ୍ୟାଯ୍ୟ ପାଉଣା ସେତିକି ।"

"କିପରି ?"

"ତୁମେ କଲଚଲା କୁଲି ଆଉ କଲମଚଲା କୁଲି ଏକ । କାରଖାନାରେ କୁଲିମାନେ କଲ ଚଳାଇ ଯେଉଁ ଲକ୍ଷ ଲକ୍ଷ ଟଙ୍କା ଲାଭ କରନ୍ତି, ତାହା କାରଖାନାର ମାଲିକଙ୍କ ପ୍ରାପ୍ୟ । ତୁମେ କଲମ ଚଳାଇ ଯାହା ଲାଭ କର, ସେହିପରି ତାହା ପ୍ରକାଶକଙ୍କ ପ୍ରାପ୍ୟ ।"

ରଞ୍ଜନବାବୁ ମୁହଁଟାକୁ ଅଠାରହାଣ୍ଡି କରିଦେଲେ । ଆଉ କଥା ନ ଜମିବାରୁ ମୁହୂର୍ତ୍ତକ ପରେ ସେଠାରୁ ବିଦାୟ ନେଇ ଗଲେ ।

× × ×

ସନାତନୀ ଅସନାତନୀ, ଖଦଡ଼ୀ ବେ-ଖଦଡ଼ୀ, ସାଥୀ ଅସାଥୀ, ବେକାର ଅବେକାର ସବୁ ମିଶି କୋଡ଼ିଏ ବର୍ଷରୁ ପଚିଶ ବର୍ଷ ପର୍ଯ୍ୟନ୍ତ ମୋଟରେ ନଅଶହ ଅଠର ଜଣ କୁମାରୀଙ୍କ ଦୁଃଖରେ ବିଚଳିତ ହୋଇ ନିଜର ସୁଖ ଏପରି କି ଜୀବନ ସୁଦ୍ଧା ଜଳାଞ୍ଜଳି ଦେଇ ତାଙ୍କର ଜୀବନସାଥୀ ହେବା ପାଇଁ ଦରଖାସ୍ତ କରିଥିଲେ । ପ୍ରତ୍ୟେକେ କୁମାରୀଙ୍କ ପାଇଁ ଠିକ୍ ଉପଯୁକ୍ତ, କୁମାରୀ ତାଙ୍କୁ ନିଶ୍ଚୟ ମନୋନୀତ କରି ଫଟୋ ପଠାଇବେ—ସେହି ଆଶାରେ ୧୦୨୯ର

ଡାକ ଟିକଟ ମଧ୍ୟ ପଠାଇଥିଲେ । କେତ୍ନ କେହି ନଅ ଅଣା ପରିବର୍ତ୍ତେରେ ଅତି ଉତ୍ସାହରେ ନଅ ସୁଉକା, ନଅ ଅଧୁଲିର ଟିକଟ ବ ଦେଇଥିଲେ—ନଜର ଆନ୍ତରିକତା ଜଣାଇବା ଲଗି । ମୋଟରେ ୪୭୫୯।୯୬ ଗଣେଶକୁମାରଙ୍କ ହାତପେଠେ ହେଲ । ଆନନ୍ଦରେ ତାଙ୍କ ଗୋଡ଼ ତଳେ ଲଗୁ ନ ଥାଏ । ନଜ ବୁଦ୍ଧି ବଳରେ ଏ କନ୍ୟା ଆଉ ରତ୍ନ ସିନା ଯେ ହାସଲ କରି-ପାରିଛନ୍ତି ! ଧନ୍ୟ ନଜର ମୁଣ୍ଡ !

× × × ×

ଦେଢ଼ମାସ ପରେ ପୁଣି ଗଣେଶକୁମାର ଓ ରଞ୍ଜନ-ବାବୁଙ୍କର ସାକ୍ଷାତ । ରଞ୍ଜନବାବୁ ଆସି ଦେଖନ୍ତି ଯେ, ଗଣେଶ-କୁମାର କୁଆଡ଼େ ଯିବା ଉଦ୍ଦେଶ୍ୟରେ ନଜର ଲୁଗାପଟା ସଜାଡ଼ି ଭଙ୍ଗା ଟ୍ରଙ୍କରେ ପୂରାଉଅଛନ୍ତି । ରଞ୍ଜନବାବୁ ପଚାରିଲେ, "କରେ, କୁଆଡ଼େ ଯିବୁ କ ?"

ଗଣେଶକୁମାର ବଡ଼ ବ୍ୟଥିତ ଚିତ୍ତରେ ଭଙ୍ଗା ସ୍ୱରରେ କହିଲେ, "ନ ଯାଇ ଆଉ କରିବ କଅଣ ? କନ୍ୟା ଗଲ, ରତ୍ନ ବ ଗଲ । ପୁଣି ଏଠାରେ ରହିଲେ ମୁଣ୍ଡଟି ଯିବ, ନ ହେଲେ ମାମୁଘର ବାସ । ତେଣୁ ଆଜ ରାତକାରାତି ଏଠାରୁ କୁଆଡ଼େ ପଳାଇଯିବା ଦରକାର ।"

"କଥାଟା କଅଣ ଠିକଏ ହେଲେ ଖୋଲ କହ ।"

"କଥାଟା ଆଉ କେନା । ମାଇପେ କହନ୍ତି ନାହିଁ, ଯାହାପାଇଁ ମୁଁ ଗ୍ରେପ୍ତ କଲ, ସେ କହୁଛି ଗ୍ରେର । ଯେଉଁ ନର୍ସ ପାଇଁ ମୁଁ

ଏତେ ବଡ଼ କାମ କଲ, ସାତଶହ ଉପରେ ଟଙ୍କା ପାଇଲ, ସେ ମୋ ମୁଣ୍ଡରେ ବଡ଼କ ପକାଇଦେଲା । କାଲି ଜବରଦସ୍ତି ମୋ ଘରକୁ ଆସି ଟଙ୍କାତକ ନେଇ ମୁହଁ ମୋଡ଼ ଚାଲିଗଲା ।"

"ତୁ ଟଙ୍କା ଦେଲୁ କାହିଁକି ?"

"ନ ଦେଇ ଆଉ ଗତି ଥିଲା ? ମୋ ସହିତ ବିବାହ ହେବ ବୋଲି ସବୁ ଠିକ୍ ହୋଇଥିଲା । କେଉଁ ଚଣ୍ଡାଳ ଆସି ତାକୁ କ ମନ୍ତ୍ର କଲା କେଜାଣି, ସେ ଆସି କହିଲା, 'ମୁଁ ତୁମକୁ ବାହା ହେବ ନାହିଁ । ଅନ୍ୟ ସହିତ ମୋର ସବୁ ଠିକ୍‌ଠାକ୍ ହୋଇଗଲାଣି । ତାଙ୍କର କନ୍ତୁ ଟଙ୍କା ନିତାନ୍ତ ଦରକାର । ଅନ୍ତତଃ ସାତଶହ ଟଙ୍କା ନ ପାଇଲେ ମୋତେ କଦାପି ସେ ବାହା ହେବେ ନାହିଁ ।' ଏହା ଶୁଣି ମୋ ହାକାସି ଉଡ଼ିଲା । ସୁନାଚୁଅ ଭଳି ତାକୁ ସାତଶହ ଟଙ୍କା ବଢ଼ାଇଦେଲି ।"

"ଆଉ ତୁ ପଳାଉଛୁ କାହିଁକି ?"

"ସେ ତ ସବୁ କଥା ପ୍ରକାଶ କରିଦେବ ବୋଲି ଧମକାଇ ଟଙ୍କାତକ ନେଇଗଲା । ମୁଁ ନ ପଳାଇ ଏଠାରେ ରହି କଅଣ ଜେଲରେ ଯାଇ ଘଣା ପେଲିବି ? ସମ୍ପାଦକ ବାବୁ ପାଇଲେ ଆସି ତା ପାଉଣା ଦାବି କରିବ; ତୁ ତ ତୋ ପାଉଣା ପାଇଁ ଆସିଗଲୁଣି । ବାକି ଯେ ପାଣ୍ଠି ମୋଟେ ୫୪।୬ । ସେତକ ମାତ୍ର ମୋର ସମ୍ବଳ, ମୁଁ ତୁମ ଦୁହିଁଙ୍କୁ ଦେବି କଅଣ ?"

ରଞ୍ଜନବାବୁ ମୁରୁକି ହସା ଦେଇ କହିଉଠିଲେ, "ଆରେ, ମୁଁ ପାଉଣା ମାଗିବା ପାଇଁ ଆସି ନାହିଁ । ମୁଁ ଆସିଛି, ମୋର ବାହାଘରେ ଯୋଗ ଦେବା ପାଇଁ ତୋତେ ନିମନ୍ତ୍ରଣ କରିବାକୁ ।"

ଗଣେଶକୁମାର ଆକାଶରୁ ପଡ଼ିଲା ପରି କହିଲେ, "ତୋର ବାହାଘର ! ତୁ ପରା ଚିରଜୀବନ ବାଡ଼ୁଅ ରହିବୁ ବୋଲି ଠିକ୍ କରିଥିଲୁ । ପୁଣି ହଠାତ୍ ଏପରି ମତ ବଦଳାଇଲୁ କାହିଁକି ? ତୋ ଆଦର୍ଶ ଗଲା କୁଆଡ଼େ ?"

"ଶିକ୍ଷିତା ସାହିତ୍ୟିକା ନର୍ସ, ବିଶେଷତଃ ତାଙ୍କ ସମ୍ପତ୍ତି ଆଉ ନଗଦ ସାତଶହ ଟଙ୍କା ପାଇଲେ କେଉଁ ବୁଡ଼୍ବକ କାହିଁକି ବାଡ଼ୁଅ ରହିବ ? ଆଦର୍ଶ ତ ଆଉ ନଗଦ ଏତେ ଟଙ୍କା ଦେଇ ନ ଥାନ୍ତା ।"—କବି ରଞ୍ଜନ ମହାପାତ୍ର ଗମ୍ଭୀର ଭାବରେ ଏତିକି କହିଲେ ।

ଗଣେଶକୁମାର ଦୁଇ ହାତରେ ନିଜ ଛାତିକୁ ଦୁଇଟା ଗୁମ୍ପୁଡ଼ା ମାରି କହିଲେ, "ହାଇରେ ନିମକହାରାମ୍, ତୁ ପୁଣି ମୋର ଏଡ଼େ ବଡ଼ ଶତ୍ରୁ ହୋଇଉଠିଲୁ ।"

## ନାଇଣ୍ଟିନାଇନ

ପୁରାଣକାରମାନେ ଏ ଦୁନିଆକୁ ହାଟ ବା ଧର୍ମଶାଳା ସହିତ ତୁଳନା କରିଯାଇଛନ୍ତି; କାରଣ ହାଟ ବା ଧର୍ମଶାଳାକୁ କେତେ କୁଆଡ଼ୁ ଲୋକ ଆସନ୍ତି, କିଛି ସମୟ ରହି ନିଜର କାମଦାମ ସାରି ନିଅନ୍ତି, ପୁଣି କିଏ କୁଆଡ଼େ ଚାଲିଯାଆନ୍ତି । ଦୁନିଆରେ ମଧ୍ୟ ସେହିପରି ହୁଏ । ବୋଧହୁଏ, ଆଜିକାଲିକାର ସହରର ମେସ୍ ପ୍ରଥା ସେତେବେଳେ ଥିଲେ, ସେମାନେ ଦୁନିଆକୁ ମେସ ସହିତ ଉପମା ଦେବାକୁ ବେଶୀ ତାରିଫ୍ ମନେ କରିଥାନ୍ତେ । ବିଶେଷତଃ ଓଡ଼ିଶାର ରାଜଧାନୀ କଟକ ସହର, ମୁକୁଟ ମଧ୍ୟରେ ମଣି ପରି ତା ମଧ୍ୟରେ ବକ୍ସିବଜାର, ସେ ବଜାରର ଝୁମୁକ ଲେନ ଭିତରେ ଧୋବାସାହି ଗଳି, ତା ଭିତରେ ଦଶକଡ଼ ବାବୁଙ୍କ ଦଶବର୍ଷରୁ ବେ-ମରାମତି କୋଠା ଚାଳ ମିଶା ଘରେ ଆମର 'ରଏଲ ପାଲେସ' ମେସ୍ ।

ମେସ୍‌କୁ କେତେ କୁଆଡ଼ୁ ଆସନ୍ତି; ମାସେ, ଛମାସ, ବର୍ଷେ ମେସ୍‌ର ଅତିଥି ହୁଅନ୍ତି; ପୁଣି କିଏ କୁଆଡ଼େ ଚାଲିଯାଆନ୍ତି । ମାତ୍ର ସ୍ଥାୟୀ ବାସିନ୍ଦା ହୋଇ ମେସକୁ ଇସ୍ତମରାରୀ ପଟ୍ଟା କରି ରହିଛୁ ଆମେ କେତେ ଜଣ; ଯଥା—ମୁଁ ଖୋଦ୍, ଶୁକରାମ ପୁଝାରୀ, ବନମା ଚାକରାଣୀ, ଅଗଣିତ ଛାରପୋକ ଓ ସୁଉକ ଓଜନ ମଶା ।

ଏବେ ଯେଉଁ ନୂଆ ଦଳେ ଆସି ଜୁଟି ମେସ୍‌କୁ ସରଗରମ କରିଛନ୍ତି, ସେମାନେ ଖେଚେଡ଼ି ପରି ବାରମିଶା । ସେକ୍ରେଟେରିଏଟ ଚପରାଶିଠାରୁ ଆରମ୍ଭ କରି କଲେକ୍ଟରୀ କଚେରୀର ପ୍ରୋବେସନାରୀ

କ୍ଲର୍କ, ସ୍କୁଲ ମାଷ୍ଟରଠାରୁ ଆରମ୍ଭ କରି ଠୁନ୍‌ଠୁନ୍‌ୱାଲା ଗୋଦାମର ଗୁମାସ୍ତା, ସଙ୍ଗୀତ ବିଶାରଦ, ସିନେମା ଷ୍ଟାର, କବି, ଚିତ୍ରକର କେହି ହେଲେ ବାଦ ଯାଇ ନାହାଁନ୍ତି ।

ସେମାନଙ୍କ ଭିତରେ ସମସ୍ତଙ୍କର ପ୍ରିୟ ହୋଇ ପଡ଼ିଛନ୍ତି ପ୍ରକାଶବାବୁ ଓରଫ 'ନାଇଣ୍ଟିନାଇନ' । ନାଇଣ୍ଟିନାଇନ ନାମଟା ଆଗରୁ ତାଙ୍କୁ କିଏ ଦେଇଥିଲା କି ଏଠାରେ ନୂଆ ହୋଇ ଦିଆଗଲା, ସେ କଥା ଜାଣିବା ସହଜ ନୁହେଁ । ତେବେ ସେ ଯେତେ ଗୁଡ଼ାଏ କଥା କହନ୍ତି, ସେଥିରୁ ନାଇଣ୍ଟିନାଇନ ପରସେଣ୍ଟ ଅର୍ଥାତ୍ ଶତକଡ଼ା ଅନେଶ୍ୱତ ମିଛ ବୋଲି ସମସ୍ତଙ୍କର ବିଶ୍ୱାସ । ସେଇ ହେତୁରୁ ତାଙ୍କ ନାମ ନାଇଣ୍ଟିନାଇନ । ଅବଶ୍ୟ ସେ ସାର୍ଥକନାମା ।

ମାସ ଶେଷ ଆଡ଼କୁ ମେସ୍ ଦୁଇ ଚାରି ଦିନ ବନ୍ଦ ହେବ, ସଭ୍ୟଙ୍କ ମଧ୍ୟରେ କଳି ତକରାଳ ଲାଗିବ—ଏହା ମେସ୍‌ର କୋଷ୍ଠୀଗତ । ସେଦିନ ଠିକ୍ ସେହି ଅବସ୍ଥା । କାହାରି ପାଖରେ ଟଙ୍କା ନାହିଁ; ତେଣୁ ଭାତ ଡାଲମା ବି ବନ୍ଦ । ମ୍ୟାନେଜର ଜଣ ଜଣ କରି ଆସି ତାଗିଦା କରି, ଗାଳି ଗୁଲଜ ଦେଇ ମାନ ଅପମାନ କଥା କହି ଚାଲିଗଲେଣି । ପ୍ରତି ମାସରେ ଜଣେ ମ୍ୟାନେଜର ହୁଏ, ସେ ମାସରେ ତାର ଗାଳି ଦେବାର ପାଳି । ଅନ୍ୟାନ୍ୟ ମାସରେ ସେ ଯେତେ ଗାଳି ଶୁଣିଥାଏ, ତାର ପ୍ରତିଶୋଧ ସେଇ ମାସରେ ନେଇଯାଏ । ତା ପର ମାସରେ ତାର ପୁଣି ଗାଳି ଶୁଣିବାର କଥା ।

ରାତିରେ ପଡ଼ି କାଠ, ମ୍ୟାନେଜରର କଡ଼ା କଥା—ଏହି ସବୁ କାରଣରୁ ସମସ୍ତଙ୍କ ମନ ବିଗିଡ଼ି ଯାଇଥାଏ । ତେଣେ

ବାହାରେ ମେସ୍ ଅନ୍ଧାର କରି ସୃଷ୍ଟି ପ୍ରଳୟ ହେବାର ଉଦ୍ୟମ । ଗୋଟିଏ ଘରେ ମ୍ୟାନେଜର ସମେତ ଦୁଇ ତିନି ଜଣ ମୁହଁ ଶୁଖାମାନ ଅନ୍ଧାରହାଣ୍ଡି ପରି ଲମ୍ବ ଚୁପ୍‌ଚାପ ବସିଛନ୍ତି । ଏହି ସମୟରେ ଆସି ପହଞ୍ଚିଗଲେ ନାଇଣ୍ଟିନାଇନ । ଘରଭିତରର ଗୁମ୍‌ସୁମ୍ ଭାବ ବୋଧହୁଏ ତାଙ୍କୁ ଅସହ୍ୟ ବୋଧହେଲା । ସେ କାହାରି କଥାକୁ ଅପେକ୍ଷା ନ ରଖି କହିଦେଲେ, "ମେସ୍‌ରେ ଟଙ୍କା ନାହିଁ ତ ! ସେଥିପାଇଁ ଏତେ ଭାବନା କାହିଁକି ? ମୋର ଶହେ ଟଙ୍କା ପାଇବାର ଅଛି । ଏ ଦୁଇ ତିନି ଦିନ ଭିତରେ ନିଶ୍ଚୟ ମିଳିବ । ଏ ଦୁଇଟା ଦିନ ତୁମେ ଚଳାଇ ନେଇପାରିବ ନାହିଁ ?"

ନାଇଣ୍ଟିନାଇନର କଥା, ତାକୁ ବା କିଏ ବିଶ୍ୱାସ କରିବ ? ପୁଣି ଶହେ ଟଙ୍କା । ମାସକୁ ଯାର ଜରିମାନ ପନ୍ଦରଟି ମୁଦ୍ରା, ସେହି ଟଙ୍କା ସେ ପାଇବ—ମେସକୁ ପୁଣି ଦେବ ।

କାହାରି ମୁହଁରୁ ପଦେ ହେଲେ କିଛି ଜବାବ ନ ପାଇ ନାଇଣ୍ଟିନାଇନ ପୁଣି କହିଉଠିଲେ; "ଆରେ, ମୋତେ ବିଶ୍ୱାସକର, ମୁଁ ଧବଳେଶ୍ୱରଙ୍କ ଆଡ଼କୁ ହାତ ବଢ଼ାଇ କହୁଛି, ମୋ ଆଖି ଛୁଉଁଛି, ମୁଁ ନିଶ୍ଚୟ ଶହେ ଟଙ୍କା ପାଇବ । ଏ ଦୁଇଟା ଦିନ ଯେ କୌଣସି ପ୍ରକାରେ ତୁମେ ମେସ୍ ଚଳାଇନିଅ ।"

ମ୍ୟାନେଜର କହିଲେ—ଏତେ ତ ଦ୍ୱାହି ଦେଲ, ଟଙ୍କା କୁଆଡ଼ୁ ପାଇବ ଶୁଣେ ?

ଉତ୍ତର ମିଳିଲା—ତେବେ କଥାଟା ଶୁଣିଲେ ଯାଇ ତୁମର ବିଶ୍ୱାସ ହେବ; ନା, ତା ହେଲେ ଶୁଣ ।

"ଏ ଛ ମାସ ତଳର କଥା । ମୁଁ ସେତେବେଳେ ବାଲେଶ୍ୱରରେ ଥାଏଁ ।

"ଆଜକାଲ ରେଲଯାତ୍ରାଟା ଯେ କେମିତ ସୁଆଦଆ, ତାହା କେବଳ ଅନୁଭବୀ ଜାଣନ୍ତି । ଜହାଉ ଦରକାର ପଡ଼ବାରୁ ମୁଁ ରେଳରେ ପୁରୀ ଯିବା ପାଇଁ ବାହାରିଲି । ଦରକାରଟା କଅଣ କି ?—ଗୃହିଣୀ ବାହାଘର ପାଇଁ ପୁରୀ ଅର୍ଥାତ୍ ତାଙ୍କ ଭାଇ ଘରକୁ ଯାଇଥାଆନ୍ତି । ଏହା ବୋଲି ଭାବବ ନାହିଁ ଯେ, ବାହା-ଘରଟା ମୋ ଗୃହିଣୀଙ୍କର; ତାଙ୍କ ଭାଇଙ୍କର ବାହା । ଗୃହିଣୀଙ୍କ ଅନୁପସ୍ଥିତରେ ମୋ ଘରଟା ଏକାବେଳକେ ଅନ୍ଧାର । ତେଣୁ ତାଙ୍କୁ ଯାଇ ଶୀଘ୍ର ମୋର ଆଣିବାର କଥା ।

"ପାଞ୍ଜିରେ ଅମୃତବେଳା ଦେଖି ଲୁଗାପଟା ବାନ୍ଧି ପୁଡ଼ା କରି ଷ୍ଟେସନକୁ ଧାଇଁଲି । ଷ୍ଟେସନରେ ଆସି ଦେଖିଲି, ଜାପାନର ବର୍ମା ଦଖଲ ଆୟୋଜନ । ମୋ ଆଖି ଖୋସି ହୋଇଗଲା । ମଣିଷ ତ ନୁହନ୍ତି—ଯେମିତ ବର୍ଷାଦିନେ ପଡ଼ଆରେ ଦୁବଘାସ ଉଠିଛି ।

"ଯାହାହେଉ କଳେବଳେ ଟିକଟଟାଏ କଲି; କିନ୍ତୁ ଗାଡ଼ିରେ ବସିବି କପରି ? ବହୁତ ଗାଳିମନ୍ଦ, ଧକ୍କା, ବେକ-ଚିପିଆ ଖାଇ ଏ ଡବା ସେ ଡବା ହେଉ ହେଉ ଦେଖିଲି, ଗୋଟାଏ ସେକେଣ୍ଡକ୍ଲାସ ଡବା ପାଖରେ ବେଜାଏ ଭିଡ଼ । ସେଠି ହୋଇଛି କଅଣ କି—ଜଣେ ମହନ୍ତ ଗାଡ଼ିରେ ଚଢ଼ିବା କଥା । ଦୁଆର ତ ବନ୍ଦ, ଡବାଭିତରେ ତିଳ ପକାଇବାକୁ ବି ଜାଗା ନାହିଁ । ଟଙ୍କାଟାଏ କଲାପୋତେଇ ନେଇ ଷ୍ଟେସନର ଦୁଇ ଜଣ

କୁଳ ମହନ୍ତଙ୍କୁ ବହୁତ କଷ୍ଟରେ ତଳୁ ଉଠାଇ ଝରକାବାଟେ ଗଳାଇ ପକାଇବାକୁ ଚେଷ୍ଟା କରୁଛନ୍ତି; ତେଣେ ଡବାରୁ ଗୁଡ଼ାଏ ଲୋକ ମାରମୂର୍ତ୍ତେକ ହୋଇ ତାଙ୍କୁ ତଦାକୁ ଠେଲିବାରେ ଲଗିଛନ୍ତି । ମହନ୍ତଙ୍କ ଅନ୍ତଲ ପେଟ ବି ସେ ଝରକାରେ ଗଳୁ-ନାହିଁ । ତଳ ଉପର କୃପା ପାଇ ମହନ୍ତଙ୍କ ମହାନ୍ତଲୀଳାସମ୍ବରଣ ହେବା ଉପରେ । ଦୁଇଟା ଗୋଡ଼ ଆଉ ମୁଣ୍ଡ ଗାଡ଼ି ଭିତରେ, ପିଚ୍ଛ ସମେତ ପେଟଟା ରହିଛି ବାହାରେ । ତଳ ଉପରର ଦୁଇ ଦଳ ଲୋକ ଗାଳି ଗୁଲଜ ଲଗେଇ ସେଠାରେ ହାଟ ବସାଇଛନ୍ତି ।

"ମୁଁ ଦେଖିଲି, ଏ ସୁଯୋଗ ଛାଡ଼ିବାର ନୁହେ । ତଳୁ ପାଟି କରି ମହନ୍ତଙ୍କୁ ଠେଲଠେଲ କରିବାରେ ଲଗିଗଲି । ପ୍ରକୃତରେ କଲି କଅଣ କି, ମହନ୍ତଙ୍କ ପଛ ଲୁଗା କାନି ଭିତରେ ହାତ ପୂରାଇ ତାଙ୍କୁ ତଳକୁ ଟାଣିବାକୁ ଲଗିଲି । ଉପର ଠେଲା ଆଉ ମୋ ଟଣା ପାଇ ମହନ୍ତ ମହାରାଜ କୁଣ୍ଡାବସ୍ତା ପଡ଼ିଲା ପରି ଦଡ଼ଭୁସ କରି ତଳେ ପଡ଼ିଗଲେ । ମୁଁ ଆଖି ପିଛୁଳାକେ ତାଙ୍କ ଅନ୍ତଲପେଟ ଉପରେ ଗୋଡ଼ ଦେଇ ଗାଡ଼ିଭିତରକୁ ଡେଇଁପଡ଼ିଲି । ସମସ୍ତେ ଗୋଳ-ମାଳରେ ଏତେ ବ୍ୟସ୍ତ ଥିଲେ ଯେ, ମୋତେ କେହି ବାଧା ଦେଇ-ପାରିଲେ ନାହିଁ । ଆଉ ଯେ ଗାଡ଼ିରେ ଚଢ଼ିବାକୁ ବସିଲି, ମୁଁ ଡବାରେ ଥିବା ଲୋକଙ୍କ ସାଙ୍ଗରେ ମିଶି ତାକୁ ଧକ୍କା ଦେବାରେ ଲଗିଗଲି ।

"ଯାହାହେଉ ଗାଡ଼ି ଭିତରକୁ ଆସିଲି । ଜଣେ ଗ୍ଲାଡ଼୍‌କାଟ୍ ଭଦ୍ରଲୋକଙ୍କୁ ଟିକଏ ଜାଗା ଦେବାପାଇଁ ବହୁତ ପାକଳାପାକଳି କଲି । ମୁହୂର୍ତ୍ତକ ଭିତରେ ତାଙ୍କ ସହିତ ଦୋସ୍ତି ବନିଗଲା । ଗପ୍

ଚକ୍‌କଣ ଚେହେରା, ବେଶ ପୋଷାକରୁ ବଡ଼ଲୋକ ପରି ଜଣା ପଡ଼ୁଥାନ୍ତି । 'ଆପଣ ଭାରି ସୁନ୍ଦର; ଆପଣଙ୍କ ସିଗାରେଟ ଖାଇବା ଠାଣି ତ ଦେବତାଏ ସୁଦ୍ଧା ପାଇବେ ନାହିଁ; ଆହା, ସିଗାରେଟ ଧୂଆଁ ତ ଏ ଡବା ମହକାଇ ଦେଉଛି; ଆପଣଙ୍କ ଗୃହାଣୀରେ ସାରା ଦୁନଆ ବଂଶ ହୋଇଯିବ'—ଏହିପରି ଗୁଡ଼ାଏ ଟେକାଟେକ କରି କହିବାରୁ ଦୋସ୍ତଙ୍କ ମିଜାଜ ଖୁସ୍ ହୋଇଗଲା । ସେ ପାଖରେ ମୋତେ ବସାଇ ସିଗାରେଟ୍ ଉପରେ ସିଗାରେଟ୍ ଦେବାକୁ ଲାଗିଲେ । ଗପସପରେ ଦୁହେଁ ମସ୍‌ଗୁଲ୍ ରହିଗଲୁଁ ।

"ଗାଡ଼ି ଆସି କଟକ ଷ୍ଟେସନରେ ପହଞ୍ଚିଲା । ସେଠାରେ ମଧ୍ୟ ସେମିତି ଟଣାଓଟରା । ଗାଡ଼ି ଛାଡ଼ିବାବେଳକୁ ଦେଖାଗଲା, ଗୋଟିଏ ବାଳିକା, ନାହିଁ ନାହିଁ ସ୍ତ୍ରୀଲୋକ ଗାଡ଼ିଭିତରେ ପଶୁଛନ୍ତି । ଆଜିକାଲିକା ପାଠୋଈ ସେ; ସେମିତି ସ୍ନୋ-ପାଉଡ଼ରବୋଳା ମୁହଁ, ବ୍ଲାଉଜ୍ ପିନ୍ଧା ଦେହ, ଭାନିଟିବ୍ୟାଗ୍ ଓ ବହି ଧରା ହାତ, ଫୁଲେଇ ଚପଲ ଲଗା ପାଦ । ତେବେ ଗାଡ଼ିରେ ଚଢ଼ିଲାବେଳେ ବାଁ ପାଦ ଚପଲଟା କୁଆଡ଼େ ଗଳିପଡ଼ିଛି, ଡାହାଣ ହାତର ସୁନା କାଚ ପଟେ କଏ ଟାଣି ନେଇଛି । କାଚ ତ ଗଲା ଗଲା; କିନ୍ତୁ ଚପଲ ଲାଗି ତାଙ୍କ ମନର ଦୁଃଖ ଆଉ ଧରୁ ନ ଥାଏ ।

"ମୋ ଦୋସ୍ତଙ୍କର ଏହି କଟକରେ ଓହ୍ଲାଇବାର କଥା; କିନ୍ତୁ କେଜାଣି କାହିଁକି, ତାଙ୍କର ଓହ୍ଲାଇବା ଉଦ୍ୟମ ଦେଖିଲି ନାହିଁ । ମହିଳାଙ୍କ ଦର୍ଶନରେ ଦୋସ୍ତ ଯେପରି ତାଙ୍କ 'ପ୍ରୋଗ୍ରାମ' ବଦଳାଇ ଦେଇଛନ୍ତି । ମୁଁ ଦେଖିଲି, ସେ ବଡ଼ ବିଚଳିତ ମଧ୍ୟ ହୋଇଉଠିଛନ୍ତି । ବଙ୍କେଇ ବଙ୍କେଇ ମୋହନଠାଣିରେ

ଘୁଞ୍ଚିବା, ମନକୁ ମନ ମୁରୁକିହସା ଦେବା, ସିଗାରେଟ୍ ଧୂଆଁରେ ମୁହଁ ଅନ୍ଧାର କରି ପକାଇବା ହେଲା ତାଙ୍କ କାର୍ଯ୍ୟ । ବାପ୍‌ରେ, ସେ ଯେଉଁ ଘୃହାଣୀ—ସତେ ଅବା ସେ ମହିଳାଙ୍କ ଦେହଟାପାକ ଆଖିବାଟେ ପିଇପିବେ !

"ମୁଁ ମହିଳାଙ୍କ ଆଡ଼କୁ ଆଖି ପକାଇଲି; ସେ ବି ତ କମ୍ ନୁହନ୍ତି । ଡବାରେ ଏତେ ଲୋକ; କିନ୍ତୁ ସମସ୍ତଙ୍କୁ ଛାଡ଼ି ତାଙ୍କ ଆଖି ମୋ ଦୋସ୍ତଙ୍କ ଉପରେ—ଦୋସ୍ତଙ୍କ ଉପରେ ନୁହେଁ ତ ତାଙ୍କ କୋଟ୍ ପ୍ୟାଣ୍ଟ, ତାଙ୍କ ସିଗାରେଟ ଖିଆ ଠାଣି, ତାଙ୍କ ସୁନା ଚଶମା, ତାଙ୍କ ମୁଣ୍ଡ ଟେରି ଉପରେ । ମୁଁ ତାଙ୍କ ପାଖରେ ବିଦ୍ୟମାନ; କିନ୍ତୁ ମୋତେ ଟିକିଏ ହେଲେ ନିଘା ନାହିଁ । ହେଲା ଏବେ ମୋ କାନମୁଣ୍ଡା ବାଳଗୁଡ଼ାକରୁ କେଇଟା ଧଳା; କିନ୍ତୁ ମୁଁ ବି ପୁରୁଷ-ପୁଅ; ମୁ ଡାନ୍ତଟା ଟିକ ଖଣ୍ଡିଆ, ସେଥିରେ ଯାଏ ଆସେ କଅଣ ? ହେଉ, ଦୋସ୍ତଙ୍କ ଭାଗ୍ୟକୁ ହିଂସା କରିବାର ନୁହେଁ ।"

"ପାଞ୍ଚ ହାତ ଦୂରରେ ରହି ମଣିଷସାଗରରେ ହାବୁଡ଼ୁବୁ ଖାଉ ଖାଉ ମୋ ଦୋସ୍ତ ଆଉ ସେ ମହିଳା ନିଶ୍ଚୟ ପ୍ରେମରେ ପଡ଼ିଗଲେ ବୋଲି ମୁଁ ଠିକ୍ କରିନେଲି । ଏ ସୁଯୋଗ ମୋର ହାତଛଡ଼ା କରିବାର ନୁହେଁ । ଦୋସ୍ତଙ୍କୁ ଆଶ୍ୱାସନା ଦେଇ ବହୁତ କଷ୍ଟରେ ଠେଲାଠେଲି କରି ଯାଇ ମହିଳାଙ୍କ ପାଖରେ ପହଞ୍ଚିଲି । 'ସ୍ତ୍ରୀ ଲୋକ ଆଗ'—ଏହି ଖାତିରେ ଦୁଇ ଜଣ ଭଦ୍ରଲୋକ ତାଙ୍କୁ ବସିବାକୁ ଜାଗା ଛାଡ଼ିଦେଇ ଠିଆ ହୋଇଛନ୍ତି । ମହିଳା ଆରାମରେ ବସି ଖଣ୍ଡେ 'ଉଗର' ଫିଟାଇ ଏକ ମନ ଏକ ଧ୍ୟାନରେ ଦେଖୁଛନ୍ତି—ନିଜ ଲେଖା ନ ହେଲେ କେହି କେବେ ଏତେ ମନ

ଦେଇ ଚଢ଼ିବାର ମୁଁ ଜାଣେ ନାହିଁ । ମୁଁ ଉଙ୍କିମାରି ଦେଖିଲି, 'ବର ବସ୍ତ୍ର' ଗପଟା ନେଇ ସେ ତନ୍ମୟ ।

"ଆଜକାଲିକା ରୀତି ଅନୁସାରେ ମୁଁ ଗୋଟିଏ ଦ୍ରେଟିଆ ନମସ୍କାର ପକାଇ କଥାବାର୍ତ୍ତା ଆରମ୍ଭ କରିଦେଲି ।"

ଆମ ଭିତରୁ କିଏ ଜଣେ କହିଉଠିଲେ—ଦ୍ରେଟିଆ ବୋଇଲେ ମାର୍ଗ ପ୍ରସ୍ଥ କେତେ କି ?

ନାଇଣ୍ଟି ନାଇନ ଭା ପ୍ରଭ ଗୋଟାଏ ଅଗ୍ନିବର୍ଷୀ ଗୃହିଣୀ ପ୍ରୃଣ୍ହିଁ ନିଜ କଥାରେ ଖସିଗଲେ—

"ଚିଙ୍କିଶାଳରୁ ତେଙ୍କାନାଳ ପର୍ଯ୍ୟନ୍ତ ଅର୍ଥାତ୍ କଟକରେ ଚିଙ୍କିକୁଟା ଗୃଉଳର ଅଗ୍ରବଠାରୁ ଢେଙ୍କାନାଳର ନନ ସାହେବଙ୍କ ଜେଲ ପର୍ଯ୍ୟନ୍ତ; ଆମ ଗାଁଆରେ ହେଟା ମାଡବାଠାରୁ ଦୁରେଖପରେ ହୋଟେଲର ମାଡବା ପର୍ଯ୍ୟନ୍ତ ସବୁ କଥା ପଡ଼ିଗଲା । ଦେଖିଲି, ମହିଳା ଖର 'ସ୍ମାର୍ଟ'; ବହୁତ ବିଷୟ ଜାଣନ୍ତି । ରାଜନୀତି, ବାଣିଜ୍ୟନୀତି, ଗୃହନୀତି, ଅର୍ଥନୀତି, ସ୍ୱାର୍ଥନୀତି କୌଣସିଟି ତାଙ୍କୁ ଅମାଲୁମ ନାହିଁ । ନାମଟା ପଚାରିବାରୁ ଉତ୍ତର ଦେଲେ, 'ମୋ ନାଁଟି ? ମୋ ନାଁ ଶ୍ରୀମତୀ ପୁରାତନିକା ।"

"ମୋ ମୁହଁର ଭଙ୍ଗୀ କଅଣ ହେଲା କେଜାଣି, ସେ ସାଙ୍ଗେ ସାଙ୍ଗେ ପୁଣି କହିଉଠିଲେ—'ପୁରାତନିକା ଶବ୍ଦଟା ଶୁଣି ଆପଣ ନାକ ଟେକୁଛନ୍ତି । ଆପଣ ସେ କାଳର ଲୋକ, ଆପଣ ତ ଗାର୍ଲସ୍କୁଲ ସୀମା ମାଡ଼ି ନାହାନ୍ତି, ଏହାର ମର୍ଯ୍ୟାଦା ବୁଝିବେ କୁଆଡ଼ୁ ?"

"ଗାର୍ଲସ୍କୁଲ କଥା ଶୁଣି କେଜାଣି କାହିଁକି ମୋ ସର୍ବାଙ୍ଗରେ ଥରେ ଅଜାଣତରେ ମୋ ଆଖି ବୁଲିଗଲା । ସେ ପୁଣି କହିଲେ, 'ମୋର ବାପ ମା ଅବଶ୍ୟ ଗୋଟାଏ କଅଣ ନାଁ ଦେଇଥିଲେ, ମୁଁ କିନ୍ତୁ ଏହି ନାଁଟା ମୋ ପାଇଁ ବାଛିନେଇଛି । ଆମର ନିଜର ଯାହା ଦରକାର, ତାହା ବାଛିନେବାର କ୍ଷମତା ଆମର ଅଛି । ଆମେ ଆପଣଙ୍କ ଅଇଣ୍ଠା ବାଟରେ ଚାଲିବୁ ନାହିଁ କି ଆପଣଙ୍କ ବ୍ୟାକରଣ ଦଉଡ଼ିରେ ବାନ୍ଧିହେବୁ ନାହିଁ—ଏହା ଆମର 'ମତ୍ତ୍ବ' !"

ଦୋକାନ ଗୁମାସ୍ତା ହଠାତ୍ ପଚାରିଲା—ମୋଟ କଅଣ ?

ନାଇଣ୍ଟିନାଇନ ତାକୁ ଚାହିଁ ସଂକ୍ଷେପରେ କହିଦେଲେ—'ମୂର୍ଖ !' ତା ପରେ ନିଜ ଗପ—

"ମୁଣ୍ଡ ପଛଆଡ଼ର ଚନ୍ଦା ଦାଗଟା କୁଣ୍ଡାଇ କୁଣ୍ଡାଇ ମୁଁ ହାଁକି ହାଁକି ମାଇଲି ।

"ପୁଣି ସେ ପ୍ରଶ୍ନ କଲେ—ସେ ଯେଉଁ ଭଦ୍ରଲୋକଙ୍କ ପାଖରେ ଆପଣ ବସିଥିଲେ, ସେ କିଏ କି ?

"ମୁଁ ଏହାହିଁ ତ ଖୋଜୁଥିଲି । କହିପକାଇଲି—ଆପଣ ତାଙ୍କୁ ଚିହ୍ନନ୍ତି ନାହିଁ ? ସେ ହେଉଛନ୍ତି ପରା ମାନବ ଅପାର, ଯୁଦ୍ଧ-ବଜାରରେ ବଡ଼ ଠିକାଦାର କରନ୍ତି । ଦରମା ବର୍ତ୍ତମାନ ଟ ୭୫୦୯, ବାହାହେଲେ ମିଳିବ ଆଉ ଟ୨୫୦୯ ଅଧିକା । ପୁଣି ପୁଅ ଝିଅ କଥା ତ ଅଛି ।

'ତାହେଲେ ସେ କଅଣ ବାହା ହୋଇ ନାହାନ୍ତି ? ଆଜଯାଏ କାହିଁକି ବାଡ଼ୁଅ ରହିଛନ୍ତି !'—ସାଙ୍ଗେ ସାଙ୍ଗେ ପ୍ରଶ୍ନ ହେଲା ।

"ତାଙ୍କ ଲାଖ୍ ଉପଯୁକ୍ତ ପାର୍ଟୀ ମିଳିଲେ ତ ? ଆମ ଦେଶରେ ସେମିତି 'ଫରୱାର୍ଡ଼ବାର୍ଲ' ପାର୍ଟୀ କାହାନ୍ତି ?

ମୁଁ ଟିକିଏ ରସିକତା କରି କହିଲି—କଅଣ କହିଲ ? ଫରୱାର୍ଡ଼ବାର୍ଲ ନା ଫରୱାର୍ଡ ବ୍ଲକ ?

ନାଇଣ୍ଟିନାଇନ ମୋ ଆଡ଼କୁ ଚାହିଁ କହିଲେ, "ଇସ୍କୁଲରେ କେତେଟା କ୍ଲାସ ପର୍ଯ୍ୟନ୍ତ ଧାପ ଯାଇଛ ?" ତା ପରେ କଥାର ସୁଅ ଚାଲିଲା—

"ଏତେ ବଡ଼ ସମ୍ଭ୍ରାନ୍ତ ଲୋକ, ପୁଣି ବାପା ରଖିଯାଇଛନ୍ତି ଅଗାଧ ସମ୍ପତ୍ତି—

"କଥାଟା ଏମିତି ଅଧା କରି କହି ମୁଁ ବଙ୍କେଇ ବଙ୍କେଇ ମହିଳାଙ୍କ ଆଖି ଓ ମୁହଁର ଭାବଭଙ୍ଗୀ ଠଉରି କରି ନେଉଥାଏ ।

"ସେ ଃକ୍ଷଣ୍ସେଇଠି ଚୁପ୍ ପଡ଼ିଗଲା । 'ପୁରାତନକା' ତା ପରେ ନିଜର ଧନସମ୍ପତ୍ତି, ବିଦ୍ୟାବୁଦ୍ଧି ସବୁର ପ୍ରଶଂସା କରିବାରେ ଶତମୁଖ ହୋଇଉଠିଲେ । ତାଙ୍କ ବାପା ଖୁବ୍ ବଡ଼ ଜମିଦାର; ମହାଜନ ମଧ୍ୟ । ସେ ମଲାବେଳକୁ ପଚିଶ ହଜାର ନଗଦ ଟଙ୍କା ବ୍ୟାଙ୍କରେ ରଖିଯାଇଛନ୍ତି । ମସ୍ତ ବଡ଼ ଜମିଦାରି ତ ମଫସଲରେ ପଡ଼ିଛି । (ମ୍ୟାନେଜର ମନ୍ତବ୍ୟ ଦେଲେ, ଯାଇ ଗୋଟାଇ ଆଣିଲେ ହୁଅନ୍ତା ନାହିଁ ? ଭଦ୍ରଙ୍କର ଚିଡ଼ଯାଇ ମାତ୍ର ସେ ଟିପ୍ପଣୀକୁ ଖାତିର୍ ନ କରି ନାଇଣ୍ଟିନାଇନ କହିବାକୁ ଲାଗିଲେ) ସେ ସବୁର ମାଲିକ ଏକା ସେହି । ଏଇଲାଗେ ବୁଢ଼ୀମା ବ୍ୟତୀତ ତାଙ୍କର ଆଉ କେହି ନାହାନ୍ତି । ବୁଢ଼ୀମାଙ୍କର ଇଚ୍ଛା, ଗୋଟିଏ ଉପଯୁକ୍ତ ପାତ୍ର ପାଇଲେ ଘରଜୁଆଇଁ କରି ରଖିବେ ।

ମାନ ମହଲା ସେଥିରେ ଏପର୍ଯ୍ୟନ୍ତ ସ୍ଥିର ହୋଇ ନାହାନ୍ତି, ଇତ୍ୟାଦି ।

"ମୁଁ କଥାଟା ବାଗେଇ ନେଇ କହିଲି—ଆପଣଙ୍କର ଯଦି ଆପତ୍ତି ନ ଥାଏ, ତେବେ ମୁଁ ମାନବବାବୁଙ୍କ ପାଖରେ ବିଭାଘର ପ୍ରସ୍ତାବଟା ଉଠାନ୍ତି । ମୁଁ ଦେଖୁଛି, ତାଙ୍କର ଯେପରି ଆପଣ ଉପଯୁକ୍ତା, ସେ ସେହିପରି ଆପଣଙ୍କର ଉପଯୁକ୍ତ । ସ୍ପିରିଟ୍‌କୁ କିଆଁ ଚର୍ କରି ଧରି ନେଲି ପରି ଆପଣଙ୍କ ମିଳନଟା ଚଟ୍‌କିନା ଯୋଡ଼ିହୋଇ ଯାଆନ୍ତା ।

"ଉତ୍ତର ମିଳିଲି—କଥା କଣ କି, ମୋର ଏପରି ବାନ୍ଧି ହୋଇ ରହିବାକୁ ଆଦୌ ଇଚ୍ଛା ନାହିଁ । ଏ ସ୍ୱାଧୀନ ଯୁଗରେ ସେସବୁ ମଧ୍ୟ ଶୋଭା ପାଏ ନାହିଁ । ଯାହାହେଉ, ଆପଣଙ୍କ ଭଳି ଜଣେ ବଶିଷ୍ଟ ଭଦ୍ରବ୍ୟକ୍ତି, ମୋର ଏତେଦିନର ପରିଚିତ ବନ୍ଧୁ (ଏହି ସମୟରେ ଜଣେ କିଏ ଟିପ୍‌ପଣୀ ଦେଲି, ଅଧଘଣ୍ଟାକରୁ ନିଶ୍ଚୟ କମ୍) ଯେତେବେଳେ କହୁଅଛନ୍ତି, ମୁଁ ସେଥିରୁ ବାହାରି ଯିବା ଠିକ୍ ନୁହେ । କଥା ଅଛି ପରା, 'ବୃଦ୍ଧସ୍ୟ ବଚନଂ ଗ୍ରାହ୍ୟ' ।

"ଏ ଯେଉଁ ଚଟକଣାଟା ବସିଗଲି, ସେଥିରେ ମୋ ମୁହଁ ରଙ୍ଗା ପଡ଼ିଗଲି ।

ସେତେବେଳେ ଜଣେ କେହି ଟିପ୍‌ପଣୀ ଦେଲି—ସାହସ ତ କମ୍ ନୁହେ; ପଚିଶ ବର୍ଷର ପିଲାଟାକୁ ବୃଦ୍ଧ କହିଲି ?

ନାଇଣ୍ଟିନାଇନ୍ ସେ କଥା ନ ଶୁଣିଲି ପରି କହିଲିଗଲେ—

"ମୁଁ ଦୋଷୀଙ୍କ ପରି ଉତ୍ତର ପଚାରିଲି—ତେବେ ଜାଣିଛ ?

"ଇନ୍‌ସିଡ଼ିଆର ବୋମା ଫୁଟିଲା ପରେ ଯବାବ ମିଳିଲା—ଏ ମାର୍କସବାଦ ଯୁଗରେ ଆମେ ଜାତି ଆଉ ପନ୍ଥ ଏ ଦୁଇଟାକୁ ଆଦୌ ମାନୁ ନାହିଁ ।

"ମୁଁ କହିଉଠିଲି—ଠିକ୍ ଠିକ୍; ମୋ ଦୋସ୍ତ ମଧ୍ୟ ପୂରା କମ୍ୟୁନିଷ୍ଟ; ଦୁହିଁଙ୍କର ତ ରାଜଯୋଟକ ।

× × × ×

"ଗାଡ଼ ପୁରୀରେ ପହଞ୍ଚିଲା । ମୁଁ ହାତରୁ ନଅଅଣା ଖନପଇସା ଖର୍ଚ୍ଚ କରି ଫୁଲମାଳ ପ୍ରଭୃତି ଆଣି ଦୁଦୁଓ୍ୱାଲା ଧର୍ମଶାଳାରେ ଦୁହିଙ୍କର ବାହାଘର କରିଦେଲି । ମୁଁ ଥିଲି ମଧ୍ୟସ୍ଥ; ଏଠାରେ ହେଲି କନ୍ୟାପିତା ଓ ବରପିତା, ପୁରୋହିତ,ଭଣ୍ଡାରି, ଭଣ୍ଡାରୁଣୀ, ଶଙ୍ଖ ଫୁଙ୍କିଲାବାଲା ଓ ହୁଳହୁଳି ଦେବାବାଲା ।

"ମୋର ଏ ଅଯାଚିତ ପରିଶ୍ରମ ଓ ସ୍ୱାର୍ଥତ୍ୟାଗରେ ସନ୍ତୁଷ୍ଟ ହୋଇ ଶ୍ରୀମତୀ ପୁରାତନକା ଦୁଇଯୋଡ଼ା ପାନ୍‌ଟଯୋଡ଼ ଆଉ ଶ୍ରୀଯୁକ୍ତ ମାନବବାବୁ ଶହେ ଟଙ୍କାର ଗୋଟାଏ ଚେକ୍ ସୁବିଧା ହେଲେ ଦେବେ ବୋଲି ଅଙ୍ଗୀକାର କଲେ । ଦୟା କରି ମୁଁ ଯେପରି ତାହା ଗ୍ରହଣ କରେ, ସେଥିପାଇଁ ବହୁ ଅନୁରୋଧ ମଧ୍ୟ କଲେ । ମୁଁ ପୁରୀରୁ ମୋ ଗୃହିଣୀଙ୍କୁ ଧରି ଗାଁକୁ ଫେରିଲି ।

"ବାହାଘରର ଦୁଇ ମାସ ପରେ ଶହେ ଟଙ୍କାର ଚେକ ଆଶାରେ ମୁଁ କଟକ ଆସିଲି । ମାନବବାବୁଙ୍କ ଠିକଣାରେ ପହଞ୍ଚି ଶୁଣିଲି, ସେ ହାସପାତାଳରେ ପଡ଼ିଅଛନ୍ତି । ଦେଖା କରିବା ପାଇଁ ସେଠାକୁ ଗଲି ମଧ୍ୟ । ମୋତେ ଦେଖି ରାଗରେ ତମତମ ହୋଇ ସେ କହି ଉଠିଲେ—କଜଳପାତିଆ ଭଲଲୋକ ଆସିଗଲେ ।

"ତାଙ୍କ ସହିତ କଥାବାର୍ତ୍ତାରୁ ସାର ମିଳିଲା—ଶ୍ରୀମନ୍ତ ପୁରୋହିତଙ୍କ ଅବସ୍ଥା ଛତ୍ରଖଣ୍ଡା ହୋଇଛି। ଜମିଦାରୀ, ଟଙ୍କାପଇସା ସବୁ ଫାଙ୍କି। ସେ ଜଣେ ସାମାନ୍ୟ ନର୍ସ ମାତ୍ର। ଏସବୁ ଧନସମ୍ପତ୍ତି ନ ପାଇ ମାନବବାବୁ ତାଙ୍କୁ ଗାଳିଗୁଲଜ କରିବାରୁ ସେ ରାଗରେ ମାନବବାବୁଙ୍କ ଉପରେ ଭାରତୀୟ ଫିଙ୍ଗଲ କୋର୍ଡ଼ର ୩୨୩ ଦଫାର ସାହାଯ୍ୟ ନେଇଥିଲେ। ମାନବବାବୁ ସେହିଦିନୁ ହାଜତଖାନାରେ ପଡ଼ି ରହିଅଛନ୍ତି।

"ଜାରିଣରେ ସେଠାରୁ ଫେରିଲି। ବାଟରେ ହଠାତ୍ ଶ୍ରୀମନ୍ତ ପୁରୋହିତଙ୍କ ସହିତ ଦେଖାହେଲା। ସେ ମଧ୍ୟ ରାଗରେ ମାର୍ ନ ମାର୍ ହୋଇ ମୋ ଉପରକୁ ମାଡ଼ିଆସି କହିଲେ—ତୁମେ ତ ଭାରି କଳଲଡ଼ୁଆ ଲୋକ; ମାନବବାବୁଙ୍କର ଦରମା ସତାଇଶ ଟଙ୍କା। ଏ: ଆର: ପି: ର ସେ ଜଣେ ମେସେଞ୍ଜର। ତୁମେ ମୋତେ ଭୁଲାଇ ଏତେ ବିପଦରେ ପକାଇଦେଲ ପରା! ମୁଁ ତୁମକୁ ପୁଲିସରେ ଦେବି।

"ସତେ ଯେପରି ପୁଲିସ ତାଙ୍କ ଓଳିତଳେ ଅଛନ୍ତି।

"ମୋର ଟଙ୍କା ଆଶା ପାଇଥିଲି, ପାଟଯୋଡ଼ ଆଶା ବି ଗଲା। ହାତରୁ ପୁଣି ଖର୍ଚ୍ଚ କରିଛି ନଅଅଣା ନଅ ପାହୁଲା। ଏହା କି ହେବ ସହେ? ମୁଁ ବି ରାଗିଯାଇ କହିଲି—ଆପଣ ମିଛରେ କାହିଁକି ବଢ଼ାଇ କରି କହିଲେ ଯେ, ମୋର ବଡ଼ ଜମିଦାରୀ, ବ୍ୟାଙ୍କରେ ହଜାର ହଜାର ଟଙ୍କା?

"ଶ୍ରୀମନ୍ତ ହତବଗଲେ। ଟିକିଏ ମୁରୁକିହସ ହସି କହିଲେ—ଆପଣଙ୍କ ପରି ବୋକା ଦୁନିଆରେ ନାହାନ୍ତି। ମୋ ନାଁ ସତରେ

କଅଣ 'ପୁରାତନକା' ? ମୋ ନାଁ 'ଆଧୁନିକା' । 'ଭଲ ବର' ବାଛିବାକୁ ଯାଇ ଏପରି ଲୋକ ହାତରେ ପଡ଼ିବ, ଏହା ମୋଟେ ଭାବି ନ ଥିଲି ।

"ମୁଁ କିଛି ନ ଜାଣିଲା ପରି କହିଲି—ଓଃ, ଆପଣ ତେବେ 'ଡଗର'ରେ ବର ବାଛିବାକୁ ଯାଇଥିଲେ ? କିନ୍ତୁ ମନେ ରଖନ୍ତୁ, ଆପଣ ମୋଠାରୁ ବଳି ବେଶୀ ବୋକା । ମାନବ ଅପାତ୍ରଙ୍କ ନାଁ କଅଣ ଜାଣନ୍ତି ?—ଦେବ ମହାପାତ୍ର, ଯେ କନିଆଁ ଲୋଡ଼ୁଥିଲେ ।

"ମହିଳାଙ୍କ ମୁହଁ କଳା ପଡ଼ିଗଲା ! ଗୋଟାଏ ଗଳିଭିତରେ ସେ ତରତର ହୋଇ ପଶିଗଲେ ।

× × × ×

"ପୁଣି ଆଜି କଟକରେ ଦେଖା । ଦେବବାବୁ ଓ ଆଧୁନିକା ରିକ୍‌ସାରେ ବସି ସିନେମା ଦେଖି ଯାଉଛନ୍ତି । ଖୁସ୍ ଗପରେ ଦୁହିଁଙ୍କ ମୁହଁରେ ହସ ଉଛୁଳିପଡ଼ୁଛି । ମୋତେ ଦେଖି ନ ଦେଖିଲା ପରି ମୁହଁ ବୁଲାଇଦେଲେ । ଗୋଟାଏ ନମସ୍କାରର ପାତ୍ର ବି ମୁଁ ହେଲି ନାହିଁ ।

"ତେବେ ମୁଁ କଣ ଛାଡ଼ିବା ଲୋକ ? କାଲି ଯେ କୌଣସି ପ୍ରକାରେ ତାଙ୍କର ସନ୍ଧାନ ନେବି । ଶହେ ଟଙ୍କା ତୁମକୁ ନିଶ୍ଚୟ ଆଣି ଦେବି । କାନିକା, ମାଂସର ଗୋଟାଏ ବଢ଼ିଆ 'ଫିଷ୍ଟ' ନ ହେଲେ କଅଣ ମୁଁ ଛାଡ଼ୁଛି ?"

ସମସ୍ତେ, ଏପରି କି ଅନ୍ତଃଗମ୍ଭୀର ମ୍ୟାନେଜର ମଧ୍ୟ ଏକା-ବେଳକେ କହିଉଠିଲେ, 'ନାଇଣ୍ଟି ନାଇନ' । *

---

* 'ଡଗର'ରେ 'କନିଆଁ ଲୋଡ଼ା' ଓ 'ବର ବସ୍ଥ' ନାମକ ଦୁଇଟି ଲେଖା ସମ୍ପର୍କରେ ଲିଖିତ ଓ ମୂଳ ଲେଖାରୁ ସାମାନ୍ୟ ପରିବର୍ତ୍ତିତ ।

# ସ୍ମୀସ୍ମା ଚରନ୍ତଂ

—୧—

କରାଣି, ସେଥିରେ ପୁଣି କଲେକ୍ଟର ଅଫିସ କରାଣି । କଲମ, କାଳୀ, କାଗଜ ଆଉ କଲାପୋଡାଇ—କେବଳ ଏ ବର୍ଗର କାରବାର । ତଟକା କଲେଜଫେରନ୍ତା ବଡ଼ ବାବୁ ଫାଇଲଗତପ୍ରାଣ ସାଥୀମାନଙ୍କ ସହିତ ଠିକ୍ ଟକ୍କର ଦେଇ ନ ପାରି ଅଣନିଶ୍ୱାସୀ ହୋଇ ପଡ଼ୁଅଛନ୍ତି । କଲେଜର ଫୁର୍ତ୍ତି ନାହିଁ, ହସଖେଳ ନାହିଁ, ସଭାସମିତି ନାହିଁ କି ରାଜନୀତିର ଚର୍ଚ୍ଚା ନାହିଁ ; ଅଧ୍ୟାପକଙ୍କୁ ଫାଙ୍କି ଦେବାର ଉପାୟ ଉଦ୍ଭାବନ କରିବା ଉଦ୍ୟମ ବି ନାହିଁ । ସବୁବେଳେ ଫାଇଲ, ଫାଇଲ ଉପରେ ଫାଇଲ; ଉପରସ୍ଥ କରାଣୀଙ୍କ ହୁକୁମ, ନାଜରଙ୍କ କର୍ତ୍ତବ୍ୟ ପାଳନରେ ଉପଦେଶ, ଅଫିସ ସୁପରିଣ୍ଟେଣ୍ଡେଣ୍ଟଙ୍କ କୈଫିୟତ ତଲବ, ଇନ୍‌ଚାର୍ଜ ଡେପୁଟିଙ୍କ ହୁଙ୍କାର—ଏସବୁ କିଶୋର କବିପ୍ରାଣ ବଡ଼ବାବୁ ସମ୍ଭାଳିବେ କେତେ ?

ଏକା ବଡ଼ବାବୁ ନୁହନ୍ତି, ତାଙ୍କ ସାଙ୍ଗକୁ ଜୁଟିଛନ୍ତି ଆଉ ଚାରି ପାଞ୍ଚୋଟି ଟୋକା କରାଣୀ । ପୁରୁଣା ବୁଢ଼ା କରାଣୀମାନେ ଯେପରି ଏମାନଙ୍କ ପାଖରେ ହରିଜନ । ସେମାନେ ବୃଦ୍ଧାନ୍ତ କାମ, ସେମାନଙ୍କ ନିଶା ଫାଇଲ ଘଣ୍ଟା । ଅଫିସରେ, ବାହାରେ, ବାଟଘାଟରେ, ଘରେ ଖାଇ ବସିଲାବେଳେ କି ଶୋଇଲା ବେଳେ ଫାଇଲ ହିଁ ତାଙ୍କର ଏକମାତ୍ର ଚିନ୍ତା । ସକାଳୁ ଉଠି ଆଗ ଥରେ ହରିନାମ ଜପି ନଅନ୍ତି—ଯେପରି ସୁପରିଣ୍ଟେଣ୍ଡେଣ୍ଟ ନ ରାଗେ; ଅଫିସକୁ ବାହାରିଲା ବେଳେ କାନ୍ଥରେ ସାତ ଥର

ମୁଣ୍ଡିଆ ମାରି, ତିନଥର ନାକ ନିଶ୍ୱାସ ବାରି ଡାହାଣ ଗୋଡ଼ ଆଗ ପକାଇ ଅନୁକୂଳ କରନ୍ତି—ଯେପରି କୌଣସି କୈଫିୟତ ତଲବ ନ ହୁଏ ।

ବାଟରେ ଘାଟରେ କେହି କପରି ବନ୍ଧୁବାନ୍ଧବ ଦେଖାହେଲେ ଆଲୋଚନା ହୁଏ, ଅମୁକ ଫାଇଲରେ ଡେପୁଟି ଏମିତି 'ଅର୍ଡ଼ର' ଦେଇଛନ୍ତି । କାଳେ ଅକାଳେ ସିନେମା ଥିଏଟର ଗଲେ ସେଠି ମୂଳରୁ ଶେଷ ପର୍ଯ୍ୟନ୍ତ ଝିଙ୍ଗୁର ଗୃହଲେ, ଅମୁକ ଫାଇଲ ଡେପୁଟି ପାଖକୁ ନ ଯାଇ ସାହେବ ପାଖକୁ ଗୃହଲଯାଇଛି । ଘରେ ଶୋଇଥିଲାବେଳେ ଫାଇଲ ଗୋଳମାଳର ସ୍ୱପ୍ନ ଦେଖି ଚରଚରେଇ ଉଠନ୍ତି । ଯଦି ପାଖରେ କେହି ଶୋଇବାର ସୌଭାଗ୍ୟ ତାଙ୍କର ଥାଏ, ତେବେ ସେ ଉଠାଇ ନ ଦେଲେ ବିଛଣା ଓଦା ହୋଇଯିବାର ସମ୍ଭାବନା ।

ବୟସ୍କ ନ ହେଲେ ମଧ୍ୟ ଏହିପରି ବୃଦ୍ଧ ପ୍ରବୀଣ ଦଳଙ୍କ ସହିତ ପ୍ରଜାପତି ପରି ଦିନକୁ ଦିନ ନୂଆ ଫେସନଦୋରସ୍ତ କଳ୍ପନାବିଳାସୀ ଟୋକାଙ୍କର ଅହିନକୁଳ ସମ୍ପର୍କ ରହିବା ସ୍ୱାଭାବିକ । ଟୋକାମାନେ ବୁଢ଼ାଙ୍କୁ ଯେପରି ଘୃଣା କରନ୍ତି, ବୁଢ଼ାମାନେ ଟୋକାଙ୍କୁ ସେହିପରି ବେଖାତିର୍ କରନ୍ତି । ଟୋକାମାନେ ମନେ କରନ୍ତି, ବୁଢ଼ାଏ ଏ ଯୁଗର ଉପଯୁକ୍ତ ନୁହନ୍ତି; ରାଜନୀତି, ସମାଜନୀତି, କାବ୍ୟ, କବିତା, ସିନେମା, ଥିଏଟରର ଧାର ଧାରନ୍ତି ନାହିଁ । ବୁଢ଼ାମାନେ ଭାବନ୍ତି, ଟୋକାଗୁଡ଼ାକ ଛୁଆ ଟୋକା ମାତ୍ର । ଫାଇଲ ଠିକ୍‌ରୂପେ ହାକିମ ଏ ଖରେ 'ପୁଟ ଅପ୍' କରିପାରିବେ ନାହିଁ, ସୁପରିଣ୍ଟେଣ୍ଡେଣ୍ଟଙ୍କୁ

ଖୁସି କର କପର ରୁକର ବଜାୟ ରଖିବାକୁ ହେବ, ତାହା ହାସଲ କରିପାରିବେ ନାହିଁ ।

ଅଫିସରେ ଏହି ବହୁରୂପୀଙ୍କ ମଧ୍ୟରେ ପଡ଼ି ବିପ୍ରବାବୁଙ୍କ ମୁଣ୍ଡ ଘୂରିଗଲା । ମାତ୍ର ଅନ୍ୟ ଉପାୟ ନାହିଁ । ଗୃକର ତ କରିବାକୁ ହେବ । ଆଉ ତ କେଉଁଠି ସ୍ଥାନ ମିଳୁ ନାହିଁ—ତେବେ କରିବେ କଅଣ ?

ତାଙ୍କ କଲେଜ ସାଙ୍ଗ ଜଣେ ସେଦିନ କହିପକାଇଲେ—"କି ହୋ ବିପ୍ରବାବୁ ! ତୁମର ଶେଲି, ବାଇରନ୍, ସେକ୍ସପିଅର କୁଆଡ଼େ ଗଲେ କି ?"

ବିପ୍ରବାବୁ ବଡ଼ ଦୁଃଖରେ ଦୀର୍ଘ ନିଶ୍ୱାସ ପକାଇ କହିଲେ—"ଭାଇ, ଏଠି ଯଦି ଗୃକରୀ କରିବାକୁ ପଡ଼ିବ ବୋଲି ଜଣାଥାନ୍ତା, ତେବେ କେଉଁ ବୋକା ଏତେ ରାତି ଅନିଦ୍ରା ହୋଇ ଶେଲି, ବାଇରନ୍ ଘୋଷିଥାନ୍ତା ? ଏ ଫାଇଲ ଗଦାତଳେ ସେ ସବୁ କେଉଁ କାଳୁ ଚୂପା ପଡ଼ିଗଲେଣି ।"

ରେକର୍ଡ଼କିପର ଦରବୁଢ଼ା ପ୍ରାଣକୃଷ୍ଣବାବୁ ତାଙ୍କ ପାନଖିଆ କଳାଦାନ୍ତ ଦେଖାଇ କହିଉଠିଲେ,"କିଏ ? ମିଷ୍ଟର ଶିଲି ? ମୁଁ ପ୍ରଥମେ ପ୍ରୋବେସନର ଥିଲାବେଳେ ସେ ଜିଲ୍ଲା ମାଜିଷ୍ଟ୍ରେଟ ଥିଲେ । ବଡ଼ ଦଣ୍ଡାମାର୍କା ଏକା ସେ ।"

ଆଉ କଅଣ କହିଥାଆନ୍ତେ, ମାତ୍ର ତାଙ୍କ କଥାକୁ କେହି କାନ ଦେଉ ନାହାନ୍ତି ଦେଖି ଚୁପ୍ ହୋଇଗଲେ ।

ବିପ୍ରବାବୁ ବୁଢ଼ା ଦଳଙ୍କୁ ବିଶେଷତଃ ସୁପରିଣ୍ଟେଣ୍ଡେଣ୍ଟ ଓ ତାଙ୍କ ଖୁସାମଦିଆ ପାଖଲୋକଙ୍କୁ ଘୃଣା କରନ୍ତି ସବୁଠାରୁ ବେଶୀ । ପଛରେ ତାଙ୍କର ନାନାପ୍ରକାର ସମାଲୋଚନା କରନ୍ତି, ମୁହଁ ବିକୃତ କରି ଭାବଭଙ୍ଗୀ ଦେଖାନ୍ତି; ମନକୁମନ ଖୁବ୍ ହସନ୍ତି, ନିଜ ସାଙ୍ଗସାଥୀ କିରାଣୀଙ୍କୁ ମଧ୍ୟ ହସାନ୍ତି ।

—୨—

ଟାଇପିଷ୍ଟ ମାଧବବାବୁଙ୍କର ବିଭାଘର । ତାଙ୍କୁ ଛୁଟି ମିଳିଲା ପନ୍ଦର ଦିନ ଦଉଡ଼ ଧାପଡ଼ ପରେ ବହୁ କଷ୍ଟରେ ପାଞ୍ଚ ଦିନ । ଛୁଟିରୁ ଫେରି ବଡ଼ ମନଦୁଃଖରେ ସେ କହିଥିଲେ—ସାତମଙ୍ଗଳା ଯାଏ ବର କନ୍ୟାଙ୍କର ବେଦୀ ଉପରେ କାମ; ବାକି ଦୁଇଟି ଦିନର କାମ ପୁରୋହିତେ "ବରଭାବେ ଶିଳାପୁଷ୍ପଂ ସ୍ଥାପୟିତ୍ୱା" କରି କାମ ଚଳାଇନେବେ ବୋଲି କହୁଥିଲେ ।

ଇନଗୱର୍ଡ ଡେପୁଟିଙ୍କ ପାନ ଶାଳୀର ଝିଅର ପୁନର୍ବିବାହ— ମାସେ ଛୁଟି । ପନ୍ଦର ଦିନ ପୂର୍ବରୁ ସେ ହେଡ଼କ୍ୱାର୍ଟର ଛାଡ଼ିଅଛନ୍ତି ।

ଏହି ବିଷୟରେ ଆଲୋଚନା ସମାଲୋଚନା କରୁ କରୁ ମାଧବବାବୁଙ୍କ ଦୁଃଖରେ ଦୁଃଖିତ ହୋଇ ବିପ୍ରବାବୁ ଦିନେ କହିଥିଲେ, "ଏଗୁଡ଼ାକ କଅଣ ମଣିଷ ନୁହନ୍ତି ? ପାଞ୍ଚ ସାତଟା ଦିନ ଛୁଟି ଦେବାକୁ ଏମାନେ ଏପରି କୁନ୍ଥକୁନ୍ଥ ହୁଅନ୍ତି କାହିଁକି ?"

ଇଂଲିଶ ଅଫିସ ଆସିଷ୍ଟାଣ୍ଟ ଗୋପାଳବାବୁ ଉତ୍ତର ଦେଲେ —ଆରେ ବୋକା ? ସେମାନେ ହାକମ ପରା !

ସତେ ଯେପରି ହାକମ ଆଉ ମଣିଷ—ଏ ଦୁହିଁଙ୍କ ମଧ୍ୟରେ କସ୍ମିନ୍‌କାଳେ କୌଣସି ସମ୍ପର୍କ ନ ଥିଲା କି ରହି ନ ପାରେ ।

କିନ୍ତୁ ବଡ଼ବାବୁଙ୍କ ବାହାଘର ପାଇଁ ଛୁଟି ମିଳିଗଲା ପୂରା ପନ୍ଦର ଦିନ । ଏଥିରେ ସମଗ୍ର କିରାଣୀ ମହଲ ଯେପରି ଚମକି ଉଠିଲେ, ଖୋଦ ବଡ଼ବାବୁ ମଧ୍ୟ ସେହିପରି ଆଶ୍ଚର୍ଯ୍ୟ ହୋଇ- ଗଲେ । ବାପାଙ୍କ ଠାରୁ ସେ କେବଳ ଠିକିଏ ସୂଚନା ପାଇଥିଲେ ଯେ, ତାଙ୍କର ନିକଟରେ ବାହାଘର ହେବ; କିନ୍ତୁ ନିର୍ଦ୍ଦିଷ୍ଟ କେବେ ହେବ, ତାହା ସେ ଜାଣନ୍ତି ନାହିଁ । କେଉଁଠି ହେବ, କନ୍ୟାଟି କିପରି, ଶିକ୍ଷିତା ନା ଅଶିକ୍ଷିତା, ସୁନ୍ଦରୀ ନା ଅସୁନ୍ଦରୀ—ଏସବୁ ଜାଣିବା ବା ଜାଣିବାକୁ ଚେଷ୍ଟା କରିବା ମରହଟ୍ଟୀ ଧରଣର ବୁଢ଼ା ବାପାଙ୍କ ପୁଅ ବଡ଼ବାବୁଙ୍କ ପକ୍ଷରେ ହୁ ହୁ ଜଳୁଥିବା ନିଆଁରେ ପଶିବା ପରି ।

ସେ ତାଙ୍କ ବାପାଙ୍କୁ, ବାପାଙ୍କ ଏକଜିଦିଆ ସ୍ୱଭାବକୁ ଓ ତାଙ୍କ ଅହେତୁକ ରାଗକୁ ଭଲ କରି ଜାଣନ୍ତି । ତେଣୁ ସେ ବିଷୟରେ କୌଣସି ଚିନ୍ତା ମନରେ ସ୍ଥାନ ନ ଦେଇ ବାପାଙ୍କ ହୁକୁମ ମୁତାବକ ଛୁଟି ପାଇଁ ଖଣ୍ଡେ ଦରଖାସ୍ତ ପକାଇ ଦେଇଥିଲେ । ସନ୍ଧ୍ୟାବେଳକୁ ସୁପରିଣ୍ଟେଣ୍ଡେଣ୍ଟଙ୍କ ସୁପାରିଶ ଫଳରେ ହାକମଙ୍କ ଅର୍ଡ଼ର ଅଙ୍ଗରେ ବହନ କରି କାଗଜଖଣ୍ଡିକ ଶୁଭସମ୍ବାଦ ନେଇ ଫେରିଆସିଲା । ବଡ଼ବାବୁ ଆନନ୍ଦ କି ନିରାନନ୍ଦ ଅନୁଭବ କଲେ ନାହିଁ, କେବଳ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

ଆସନ୍ତା ଚଇତ ମାସ ପାଞ୍ଜିରୁ ବାହାଘର ମୂଳପୋଛ ହୋଇଯାଇଛି । ତେଣୁ ଏଇ ଦୁଇ ତିନଟା ... ତିଥିରେ ଦିନଆରୁ

ସବୁ ବାହାଘର ଯେପରି ଶେଷ ହୋଇଯିବ । ଅଫିସରୁ ତ ପାଞ୍ଚ ଛଅ ଜଣ ଏହି ବାହାଘର ଉଦ୍ଦେଶ୍ୟରେ ଛୁଟି ନେଇ ସାରିଲେଣି—କାହାର ଝିଅ, କାହାର ଝିଆରୀ ବାହା; କିଏ ବା ନିଜେ ବାହା ହେବେ । ସନ୍ଧ୍ୟାବେଳକୁ ପୁଣି ଶୁଣାଗଲା, ଖୋଦ ସୁପରିଣ୍ଟେଣ୍ଡେଣ୍ଟ ତାଙ୍କ ଚତୁର୍ଥୀ କନ୍ୟାର ବିବାହ ଲଗି ଛୁଟି ନେଇଅଛନ୍ତି । ଅଫିସଟା ଏକାବେଳକେ ଖାଲି ହୋଇଯିବ ନା କଅଣ !

—୩—

ବାହାରେ ଯେତେ ଆଡ଼ା ଅଡ଼ମ୍ବର, ଟମ୍ଫୋଟୋଫାନ ଦେଖାଉଥିଲେ ସୁଦ୍ଧା ବାପାଙ୍କ କଂସର ପ୍ରତାପ ଆଗରେ ଗୁହ-ରାଜମାତ୍ରର ପଣ୍ଡା ବିପ୍ରବାବୁ ସାମାନ୍ୟ ମୂଷାଛୁଆ ମାତ୍ର । ତେଣୁ ମନର ସମସ୍ତ ଅଶାନ୍ତ ଅସନ୍ତୋଷକୁ ଦବାଇ ରଖି, ଆଶା ଆକାଂକ୍ଷାକୁ ଜଳାଞ୍ଜଳି ଦେଇ ଅଜ୍ଞାତକୁଳଶୀଳାଙ୍କୁ ନିଜର ଜୀବନ-ସାଥୀ କରିବା ପାଇଁ ଯାଇ ପାଲିଙ୍କିରେ ବସିଲେ ।

ମାତ୍ର ତାଙ୍କ ମୁଣ୍ଡରେ ବଜ୍ର ଛିଡ଼ିପଡ଼ିଲା, ଯେତେବେଳେ ବର ଓ ବରଯାତ୍ରୀ ଯାଇ କନ୍ୟା ଘରପାଖରେ ପହଞ୍ଚିଗଲେ । ବିପ୍ର-ବାବୁ ଦେଖିଲେ, ତାଙ୍କ ଅଫିସର ଅଖଣ୍ଡ ପ୍ରତାପୀ ସୁପରିଣ୍ଟେଣ୍ଡେଣ୍ଟ ଖୋଦ ତାଙ୍କ ଚିରାଚରିତ ମଇଳା କଳା କୋଟ ଓ ତା ପରେ ଦଉଡ଼ା ପରି ବଳା ହୋଇଥିବା କାନ୍ଧରେ ପକା ଧଳା ଗୁଦର ଗୁଡ଼ ଖଣ୍ଡିଏ ମଠା ଦେହରେ ପକାଇ ନଡ଼ିଆଗୁଡ଼ିକ, ଦୁବଚନ୍ଦନ ଥାଳି ଧରି ତାଙ୍କୁ ବରଣ କରିବାକୁ ଆସିଅଛନ୍ତି ।

ଚନ୍ଦ୍ରବାବୁ ଏକାବେଳକେ ଅନ୍ୟମନସ୍କ ହୋଇପଡ଼ିଲେ । ତାଙ୍କ ମୁଣ୍ଡରେ ଖେଳିବାକୁ ଲାଗିଲା, ତାଙ୍କ ପରି ତରୁଣ ଝିଙ୍କିଆ କିରାଣି ହାତରେ କଅଣ ସତେ ସୁପରିଣ୍ଟେଣ୍ଡେଣ୍ଟଙ୍କ ଆଇ. ଏ. ପାଶ ଚତୁର୍ଥୀ କନ୍ୟା ସୁକୁମାରୀ ପଡ଼ିଲେ ? ଅସମ୍ଭବ, ଏକା-ବେଳକେ ଅସମ୍ଭବ ।

କୁମାରୀ ସୁକୁମାରୀଙ୍କୁ ସେ ଆଗରୁ ଚିହ୍ନନ୍ତି । ସେ ଯେତେବେଳେ କଲେଜରେ ପଢ଼ୁଥିଲେ, ସେତେବେଳେ ଯୁବ-କଂଗ୍ରେସର ସହକାରୀ ସମ୍ପାଦକ ସେ । ଯୁବକଂଗ୍ରେସର ଚିର ଶତ୍ରୁ ଯୁବସଂଘର ଅନୁବର୍ତ୍ତିନୀ ଯୁବତୀସଂଘର ସମ୍ପାଦିକା ଖୋଦ କୁମାରୀ ସୁକୁମାରୀ ଦେବୀ । ଯୁବକଂଗ୍ରେସ କଂଗ୍ରେସର ଭାବଧାରାରେ ଗଠିତ; କିନ୍ତୁ ଯୁବସଂଘ କମ୍ୟୁନିଷ୍ଟଙ୍କ ପାଳିତ ପୁତ୍ର । ତେଣୁ ଦୁହିଙ୍କ ଭିତରେ ବରାବର ଶତ୍ରୁତା ରହିଆସିଛି । କଂଗ୍ରେସ ଦଳ ସଂଘକୁ ଯେପରି ଦେଶଦ୍ରୋହୀ ବୋଲି କହି ଫୁତ୍କାରରେ ଉଡ଼ାଇ ଦିଅନ୍ତି, ସଂଘ କଂଗ୍ରେସକୁ ସେହିପରି ଖୁସାମତିଆ ପଞ୍ଚମବାହିନୀ କହି ଗାଳିଗୁଲଜ କରେ । ସେହି କାରଣରୁ ଯୁବକଂଗ୍ରେସର ସହକାରୀ ସେକ୍ରେଟାରୀ ଚନ୍ଦ୍ରବାବୁ ଓ ଯୁବତୀସଂଘର ଖୋଦ ସେକ୍ରେଟାରୀ ସୁକୁମାରୀଙ୍କ ଭିତରେ ମତଗତ ବୈଷମ୍ୟ ବରାବର ରହିଥାଏ, ଯଦିବା ଦୁହିଁଙ୍କ ଭିତରେ କେବେ ହେଲେ ଦେଖା ସାକ୍ଷାତ କି ଜଣାଶୁଣା ହୋଇନାହିଁ ।

—୪—

କପରି କେମିତି ବରାବର ହୋଇଗଲା, ଚନ୍ଦ୍ରବାବୁଙ୍କର ତାହା ଆଉ ଖିଆଲ ନାହିଁ । ବର କନ୍ୟା ବଦାହୋଇ ଆସିଲେ । ଚଉଠି ଦିନ ମଧୁଶଯ୍ୟା ଘରେ ଯେତେବେଳେ ନିର୍ଜନରେ

ଉଭୟେ ଉଭୟଙ୍କୁ ପ୍ରଥମଥର ପାଇଁ ଦେଖନ୍ତି, ସେତେବେଳେ ଉଭୟଙ୍କ ମନ ଭାବିଯାନ୍ତି, ମୁହଁରେ ବିଷାଦକାଳିମାର ଛାୟା ।

ଅନେକ ସମୟ ଚୁପ୍‌ଚାପରେ କଟିଗଲା । ଶେଷକୁ ବିପ୍ରବାବୁ ସମ୍ଭାଳି ନ ପାରି ବହୁତ ଥର ଛେପ ଢୋକି ନିଜକୁ ଖୁବ୍ ସଂଯତ କରିନେଇ କହିଲେ, "ରାତିଟା କ'ଣ ଏହିପରି ବସି ବସି କଟିଯିବ ? ବିଛଣାଟା ତ ଖୁବ୍ ବଡ଼ ଅଛି, ଦୁଇ ଜଣ ଶୋଇବାକୁ ବେଶ ଜାଗା ହେବ; ଆସି ଏଠାରେ ଶୋଇପଡ଼ନ୍ତୁ ।"

ଏହି ପଦେ କଥାରେ ଯେପରି ପରମାଣୁ ବୋମା ଫୁଟି-ଉଠିଲା । ସୁକୁମାରୀ ଦେବୀ କ୍ରୋଧରେ ଜରଜର ହୋଇ କହି-ପକାଇଲେ, "ଆପଣ ଯୁବକଂଗ୍ରେସରେ ଥିଲେ ପରା ! ଯୁବ-କଂଗ୍ରେସ ବାଲା କ'ଣ ଏତେ ନିର୍ଲଜ ? ମୁଁ ତ ଏହା କଳ୍ପନା କରି ନ ଥିଲି !"

ଲଜ୍ଜାଟା କେଉଁ ବାଟ ଦେଇ କେଉଁଠି ପଳାଇଲା, ବିପ୍ରବାବୁ ତାହା ଠିକ୍ କରି ନ ପାରି ନିତାନ୍ତ ଅପରାଧୀ ଭଳି କହିଲେ— "ମୋର ଦୋଷଟା ଏବେ କେଉଁଠି ?"

"ଆପଣ ଏ ବିବାହରେ ସମ୍ମତ ହେଲେ କିପରି ? ହୃଦକମଳରେ ଥରେ ବିଚାର କରନ୍ତୁ, ଆପଣ କ'ଣ ମୋର ଉପଯୁକ୍ତ ?"—ସୁକୁମାରୀ କ୍ରୋଧ ଓ ଅଭିମାନରେ ଥରିବାକୁ ଲାଗିଲେ ।

ବିପ୍ରବାବୁ କହିଲେ—"ଆପଣ ବୃଥା ମୋ ଉପରେ ରାଗୁଅଛନ୍ତି । ଆପଣ ଏ ଘଟଣାରେ ଯେପରି ଦୁଃଖିତ, ମୁଁ ସେହିପରି

ଲକ୍ଷିତ । ଆମ ଦୁହିଁଙ୍କ ଦୁଇ ବାପା ହିଁ ଏ ଷଡ଼ଯନ୍ତ୍ରର କର୍ତ୍ତା । ସେ ଗୁରୁଜନ, ତାଙ୍କ ଉପରେ ଦୋଷଟା ଯେତେ ଢାଳିଦେଲେ ମଧ୍ୟ କିଛି ତ କହିହେବ ନାହିଁ ।"

ସୁକୁମାରୀ ବ୍ୟଥିତସ୍ୱରରେ କହିଲେ—"ମୁଁ ଯାଉଛି, ବାପାଙ୍କୁ ଚିଠି ଦେବି, ସେ ଆସି ମୋତେ ଏଠାରୁ ନେଇଯିବେ । ଏଠାରେ ମୁଁ କଦାପି ରହିପାରିବି ନାହିଁ ।"

"ମୋର ମଧ୍ୟ ସେହି ମତ, କିନ୍ତୁ ଏ ସାତଟା ଦିନ ନ ଗଲେ ଲୋକେ କହିବେ କଅଣ ?"

ପ୍ରେମର ପ୍ରଥମ ସମ୍ଭାଷଣ ଏହିପରି ହୋଇଗଲା । ଖଟର ଗୋଟାଏ କୋଣରେ ଚନ୍ଦ୍ରବାବୁ ଓ ଖଣ୍ଡିଏ ଦୂରରେ ଗୋଟିଏ ଚୌକିରେ ସୁକୁମାରୀ ଦେବୀ ବସି ଅନିଦ୍ରାରେ ରାତିଟି କଟାଇ-ଦେଲେ । ପାଞ୍ଚଟା ବେଳକୁ ଘର ଖାଲି ।

ପର ଦିନ ରାତି ।

ସୁକୁମାରୀ କହିଲେ, "ଦେଖନ୍ତୁ, ମୋର ଏଠାରୁ ଚାଲିଯିବାଟା ସୁନ୍ଦର ହେବ ନାହିଁ । ଲୋକେ ଖରାପ ଭାବିବେ, ବାପା ବୋଉ ଅସନ୍ତୁଷ୍ଟ ହେବେ ।"

ଚନ୍ଦ୍ରବାବୁଙ୍କଠାରୁ ସମାନ ସ୍ୱରରେ ଉତ୍ତର ଆସିଲା — "ମୋର ମଧ୍ୟ ସେହି ମତ । ବରଂ ମୁଁ ଅଫିସ କାମର ଛଳନା କରି ଏଠାରୁ ସାତମଙ୍ଗଳା ପର ଦିନ ଚାଲିଯାଉଛି । ନ ଗଲେ କେତେ ରାତି ଏଭଳି ବସି ବସି ଅନିଦ୍ରାରେ ଉଭୟେ କଟାଇବା ?"

ସୁକୁମାରୀ ଗୁମ୍ ହୋଇ ବସିରହିଲେ । ବିପ୍ରବାବୁ ଆଗରୁ ସଂଗ୍ରହ କରି ରଖିଥିବା ଖଣ୍ଡିଏ ଶପ ତଳେ ପକାଇ ଯାଇ ଶୋଇ ପଡ଼ିଲେ । ସୁକୁମାରୀଙ୍କୁ ଅନୁନୟ ବିନୟ କରି କହିଲେ—"ଆପଣ ଖଟ ଉପରେ ନିଶ୍ଚିନ୍ତରେ ଶୋଇପଡ଼ନ୍ତୁ । ଏପରି ରାତି ଅନିଦ୍ରା ହେଲେ ଦେହ ଭାଙ୍ଗିପଡ଼ିବ ଯେ ।"

ସୁକୁମାରୀ ଖଟ ଉପରେ ଗଦିରେ ଆଉ ବିପ୍ରବାବୁ ତଳେ ଶପରେ ଶୋଇଲେ । ମାସ ରାତିଟା ପୂର୍ବ ରାତି ପରି ଦୁହିଁଙ୍କର ଅନିଦ୍ରାରେ ହିଁ କଟିଲା । ରାତି ପୂରି ନ ପାହୁଣୁ ଘର କାଲି ପରି ଶୂନ୍ୟ ହୋଇଗଲା ।

ପୁଣି ତୃତୀୟ ରାତିରେ ଦେଖାସାକ୍ଷାତ, କଥାବାର୍ତ୍ତା ।

ସୁକୁମାରୀ କହିଲେ—"ଦେଖନ୍ତୁ, ଆପଣ କାଲି କଟକ ଚାଲିଯାଆନ୍ତୁ, ତା ହେଲେ ମୁଁ ଅନ୍ତତଃ ଟିକଏ ଶାନ୍ତି ପାଇବି । ଲୋକଦେଖାଣିଆ ବାହାଘରଟାଏ ଯେତେ ଆଡ଼ମ୍ବରରେ ହୋଇଯାଇଥାଉ ନା କାହିଁକି, ମୁଁ ଆପଣଙ୍କ ପ୍ରତି କଦାପି ସନ୍ତୁଷ୍ଟ ନୁହେ ।"

"ମୋର ଠିକ୍ ସେହି ମତ । ଅନ୍ତତଃ ଜଣେ ଆଇ. ସି. ଏସ୍. ଧରନ୍ତୁ, ଆମ ଅଫିସର ସାହେବଙ୍କ ସହଧର୍ମିଣୀ ହେବା ଆପଣ ଉପଯୁକ୍ତ । ଚଣ୍ଡାଳ ହାତରେ ମାଣିକ ପଡ଼ିଲେ ସେ ତାର ମର୍ଯ୍ୟାଦା ବୁଝିବ କଅଣ ?"

"ଆଉ ଗୋଟିଏ କଥା । ଆମ ଭିତରେ ଏପରି ଅପରିଚ୍ଛନ୍ନ ହୋଇଅଛି, କୌଣସି ସମ୍ପର୍କ ନାହିଁ—ଏ କଥା ଯଦି କେହି ଜାଣେ,

ଧରନ୍ତୁ ଯଦି ବାପା ବୋଉ କି କେହି ସାଙ୍ଗସାଥୀ ଜାଣନ୍ତି, ତେବେ ମୁଁ ତ ମୁହଁ ଦେଖାଇପାରିବି ନାହିଁ ।"

"ମୁହଁର ଝେଙ୍କାଟା ଦିନବେଳେ ଆଉ ଟିକଏ ବେଶୀ ଟାଣିଦେଲେ ହେଲା ।"

ସୁକୁମାରୀ ଗର୍ଜିଉଠିଲେ—"ହଉ ହଉ, ସେ ଥଟ୍ଟା ରଖନ୍ତୁ ।"

ଦବିଯାଇ ବିପ୍ରବାବୁ କହିଲେ—"ନା, ନା, ମୋର ଥଟ୍ଟା କରିବା ଉଦ୍ଦେଶ୍ୟ ନୁହେଁ । ତେବେ ଗୋଟାଏ ଭଲ ଫିକର ମୁଁ ଠିକ୍ କରିଅଛି । ଆପଣ ତ ଏଠି ରହିବେ । ମୁଁ ଅଫିସ କାମ ବାହାନାରେ ରହିବି କଟକରେ । ତେଣୁ ଆମ ଭିତରେ ପୂରାଦମ ଅସହଯୋଗ । ଯଦି କୌଣସି ଛୁଟିରେ ନଚାହିଁ ମୁଁ ଘରକୁ ଆସିବାକୁ ବାଧ୍ୟ ହେବି, ତେବେ ତଳେ ଶପ ଆଉ ଏ ତକିଆ ଖଣ୍ଡି ତ ଅଛି, ଭାବନା କଅଣ ?"

"ଆଚ୍ଛା, ଚିଠିପତ୍ର ଦିଆନିଆ ନ ହେଲେ କେହି କିଛି ଭାବିବେ ନାହିଁ ?"

ଟିକଏ ଚିନ୍ତା କରି ବିପ୍ରବାବୁ କହିଲେ—"ତାର କଅଣ ଉପାୟ ନାହିଁ ? ଆପଣ ବରାବର ଲଫାପା ଉପରେ ମୋ ଠିକଣା ଲେଖି ଛାଡ଼ି ଦେବେ, ମୁଁ ମଧ୍ୟ ଆପଣଙ୍କ ପାଖକୁ ସପ୍ତାହରେ ଥରେ ଦୁଇ ଥର ଛାଡ଼ି ଦେବି । ସମସ୍ତେ ଜାଣିବେ ଯେ, ଦୁହିଁଙ୍କ ମଧ୍ୟରେ ଖୁବ୍-ଏଇ ଧରନ୍ତୁ ପ୍ରଣୟ ଜନ୍ମି ଯାଇଛି । କିନ୍ତୁ ଲଫାପା ଭିତରେ ଖାଲି ସାଦା କାଗଜ, ନ ହେଲେ ଖବରକାଗଜର ଚିରା ଖଣ୍ଡମାନ; ତାକୁ ତ କେହି କେବେ ଦେଖିବାକୁ ଯିବ ନାହିଁ ।"

— ୫ —

ଶେଷକୁ ତାହାଙ୍କ ସ୍ଥିର ହେଲା । ଛୁଟି ପନ୍ଦର ଦିନରୁ ପାଞ୍ଚ ଦିନ କାଟି, ଶିପ୍ରବାବୁ ଅଫିସକୁ ଫେରି ଆସିଲେ । ଏଥିରେ ସାଙ୍ଗ-ସାଥୀ ଆଶ୍ଚର୍ଯ୍ୟ ହେଲେ, ସୁପରିଣ୍ଟେଣ୍ଡେଣ୍ଟ ଟିକଏ ଅନ୍ତରରେ କ୍ଷୁଣ୍ଣ ହେଲେ ମଧ୍ୟ ।

କିନ୍ତୁ ସପ୍ତାହରେ ଥରେ ଦୁଇ ଥର ଲାଲଗୋଲାପୀ ରଙ୍ଗର ଲଫାପାରେ ସୁନ୍ଦର ଗୋଲ ଗୋଲ ଅକ୍ଷରରେ ଶିପ୍ରବାବୁଙ୍କ ଠିକଣାରେ ଯେତେବେଳେ ଚିଠି ଆସିବାକୁ ଲାଗିଲା, ସୁପରିଣ୍ଟେଣ୍ଡେଣ୍ଟଙ୍କ ମନର ଗ୍ଳାନି ସେତେବେଳେ ଦୂର ହୋଇଗଲା ।

ପେଟ ଦୁଃଖ ପେଟରେ ମାରି, ମନର ଚିନ୍ତାକୁ ମନରେ ଲୁଚାଇ, ମୁହଁରେ ଆନନ୍ଦ ଫୁଟାଇ ଶିପ୍ରବାବୁ ବନ୍ଧୁମାନଙ୍କ ସହିତ ନିଜ ପ୍ରଣୟଜୀବନର ସରସ ଆଲୋଚନା କରିବାକୁ ଯାଇ ନାନା କଳ୍ପନାର ଆଶ୍ରୟ ନେଲେ । ଅଫିସରେ ଫାଇଲ ଘଣ୍ଟା ସମୟରେ ସୁପରିଣ୍ଟେଣ୍ଡେଣ୍ଟଙ୍କ ଆଇ. ଏ, ପାଶ ଚତୁର୍ଥୀ କନ୍ୟାଙ୍କ ରୂପଗୁଣ ଆଲୋଚନା ସମସ୍ତଙ୍କ କଲମକୁ ଦୁଇଗୁଣ ବେଗରେ ଚଳାଇଲା ।

ଶିପ୍ରବାବୁ ବନ୍ଧୁମାନଙ୍କ ଅନୁରୋଧରେ କୋଡ଼ିଏ ଟଙ୍କା ଖର୍ଚ୍ଚ କରି ଭୋଜି ଦେଲେ । ସେହି କଥା ଅଫିସରେ ପଡ଼ୁ ପଡ଼ୁ ମାଧବ-ବାବୁ କହିଲେ, "ଖାଲି ଭୋଜି ଦେଲେ ହେବ ନାହିଁ । ଦିନେ ଆମ ସମସ୍ତଙ୍କୁ ସିନେମା ଦେଖାଇନେବା ଦରକାର । ଭଲ ଛବି ଆସିଅଛି—ଅଶୋକକୁମାର ଓ ଦେବିକାରାଣୀ ।"

ପ୍ରାଣକୃଷ୍ଣବାବୁ ଉପରେ ପଡ଼ି କହିଉଠିଲେ, "କଏ, କଏ, ଅଶୋକ ? ମୁଁ ତାଙ୍କୁ ଚହ୍ନେ ଯେ; ବାଲେଶ୍ୱର କଲେକ୍‌ଟରୀର ସେ ନାଜର ଥିଲେ ।"

ଗୋପାଳବାବୁ କହିଲେ—"ଧେତ୍, ଆରେ ସେ ନାଜର ନୁହେଁ; ସିନେମା, ବାଇସ୍କୋପ ।

ପ୍ରାଣକୃଷ୍ଣବାବୁ ତାଚ୍ଛଲ୍ୟର ସହିତ କହିଲେ—"ହଁ, ମୁଁ ବାଇସ୍କୋପ ଦେଖିଅଛି । ପାଞ୍ଚବର୍ଷ ତଳେ, ହଁ, ଠିକ୍ ୧୯୪୦ରେ ଥରେ ଦେଖିବାକୁ ଯାଇଥିଲି । ଗୃହ ଅଣା ପଇସା ଦେଇଖାଲି ଦୁଇ ଘଣ୍ଟା କାଳ ଘୂମାଇ ଘୂମାଇ ଆସିଲି । ସେଠାରେ ଯାଇ ଯାହା ଘୂମାଇବ, ସେହି ସମୟ ଫାଇଲ ଘରକୁ ନେଇ ଦେଖିଲେ କେତେ କାମ ହୋଇଯିବ ।"



ଉପରେ ସବୁ ପ୍ରକାର ଆମୋଦ ପ୍ରମୋଦରେ ହସି ହସି ଯୋଗଦେଲେ ସୁଦ୍ଧା ବପ୍ରବାବୁଙ୍କ ଅନ୍ତର ସବୁବେଳେ ଜଳୁଥାଏ । ମାତ୍ର ଏ ଖବର କେହି ପାଆନ୍ତି ନାହିଁ । ସମସ୍ତେ ତାଙ୍କୁ ହିଂସା କରନ୍ତି । ସୁପରିଣ୍ଟେଣ୍ଡେଣ୍ଟଙ୍କ ଜ୍ୱାଇଁ; ଆଉ କୈଫିୟତ ତଲବ ହେବ ନାହିଁ ; ଦୁଇ ତିନିଟା ବର୍ଷରେ ତ ପ୍ରମୋଶନ ଉପରେ ପ୍ରମୋଶନ; ତେଣେ ପୁଣି ଆଇ. ଏ. ପାଶ ବିଦୁଷୀ ସ୍ତ୍ରୀ— ଏ ଭାଗ୍ୟ କେତେ ଜଣଙ୍କର ହୁଏ ?

ସେଦିନ ତ ପ୍ରାଣକୃଷ୍ଣବାବୁ ନିଜ ମନକଥା ନିହାତି କହି ପକାଇଲେ—ମୁଁ ହେଲେ ପିଲାଟିଏ ହୋଇଥାଆନ୍ତି କି ?

ସୁପରିଂଟେଣ୍ଡେଣ୍ଟଙ୍କ ପଞ୍ଚମକନ୍ୟା ମୋ ହାତରେ ନିଷ୍ଟସ୍ୱ ପଡ଼ଥାଆନ୍ତା । ଗୁଡ଼ —

ବଡ଼ବାବୁଙ୍କର ଚିଠି ଉପରେ ଚିଠି ଆସେ । ବନ୍ଧୁବାନ୍ଧବ-ମାନେ ଚିଠି ପଢ଼ିବା ପାଇଁ ବହୁତ ଜିଦ୍ ଲଗାନ୍ତି । ମାତ୍ର ବଡ଼ବାବୁ ଜାଣନ୍ତି, ଲଫାପା ଭିତରେ କଅଣ ଅଛି; ତେଣୁ ସେ କାହାକୁ ହେଲେ ଚିଠି ପଢ଼ିବାର ସୁଯୋଗ ଦିଅନ୍ତି ନାହିଁ । ମେସକୁ ଆସି ନବେଲାରେ ଚିଠି ଖୋଲି ସାଦା କାଗଜ ଖଣ୍ଡିମାନ ଫକାଇ ଦିଅନ୍ତି । ଗୋଲ ଗୋଲ ଅକ୍ଷର ଦେହରେ ବହୁ ଧନ୍ୟ ହୋଇଥିବା ସୁନ୍ଦର ଲଫାପାଗୁଡ଼ିକ ଡକଆଡଲେ ସାଇତି ରଖନ୍ତି । ସେତିକ ତ କେବଳ ତାଙ୍କୁ ଜୀବନଯାକ ଆଶ୍ୱାସନା ଦେବାର ସମ୍ବଳ ।

ବଡ଼ବାବୁ ଚିଠିସବୁ ଲୁଚଉଥିବାରୁ ସାଙ୍ଗ ସାଥୀଙ୍କ ଜିଦ୍ ବଢ଼ିଗଲା । କଳକୌଶଳେ ଚିଠି ପଢ଼ିବା ପାଇଁ ସେମାନେ ଲାଗିପଡ଼ିଲେ ।

ଦିନେ ଖଣ୍ଡେ ଚିଠି ମାଧବବାବୁଙ୍କ ହାତରେ ପଡ଼ିଲା । ସେ ଆଉ ଲୋଭ ସମ୍ଭାଳିପାରିଲେ ନାହିଁ । ଲଫାପାଭିତରେ ମୁକ୍ତା ପରି ଚକ୍‌ଚକ୍ ଅକ୍ଷରରେ କେତେ କଥା ଲେଖାଥିବ, ଶିକ୍ଷିତା ନବୀନାର ନୂଆ ପ୍ରଣୟ-ନିବେଦନ, ନାଟକୀୟ ଛନ୍ଦରେ ବିରହର କରୁଣ ପ୍ରଳାପ, କେତେ ବଡ଼ ବଡ଼ ଲେଖକଙ୍କ କଥା ଉଦ୍ଧାର କରି ଯାଇଥିବ ; ବୋଧହୁଏ ପ୍ରେମକବିତା ମଧ୍ୟ ପଦେ ଦୁଇ ପଦ ରହିଯାଇପାରିଥାଏ—ଏ ଲୋଭ କଅଣ କିଏ ସମ୍ଭାଳିପାରେ ?

ବଡ଼ବାବୁ ମନା କରୁ କରୁ ଲଫାପାଟିକୁ ଯେତେ ଟଣା-ଓଟରା କଲେ ମଧ୍ୟ ମାଧବବାବୁ ମନା ନ ମାନି ଚିରି ପକାଇଲେ ।

ସେତେବେଳକୁ ଅଫିସର ସବୁ ଟୋକା, ଭେଣ୍ଡିଆ, ଦରବୁଢ଼ା କିରାଣି ସେଠାରେ ରୁଣ୍ଡ ହୋଇ ଯାଇଥିଲେ । ମାଧବବାବୁ ଲଫାପା ଭିତରୁ କାଗଜ ଖଣ୍ଡ ବାହାର କରି ଭାଙ୍ଗି ଫିଟାଇଦେଲେ । ତାଙ୍କ ଚାରିଆଡ଼େ ତିନି ଚାରି ପୁଞ୍ଜା ଆଖି ଏକ ଧ୍ୟାନରେ କାଗଜକୁ ଚାହିଁ ରହିଥାଏ । କିନ୍ତୁ ଏ କଅଣ ? ଏ ପାଖ ସେ ପାଖ କେତେ ଓଲଟ ପାଲଟ କଲେ । କାଗଜର କୌଣସି ସ୍ଥାନରେ ହେଲେ ଗୋଟିଏ ସୁଦ୍ଧା ଅକ୍ଷର ନାହିଁ । ଏ କି ପ୍ରକାର ଚିଠି ?

ସମସ୍ତଙ୍କ ମୁହଁ ଫିକା ପଡ଼ିଗଲା ।·ଗୋପାଳବାବୁ କହି-ଉଠିଲେ—ଆରେ, ଏ ରବୀନ୍ଦ୍ରୀ ଯୁଗରେ କିଛି ନ ଲେଖି ଚିଠି ଦେବା ହିଁ ଗୋଟାଏ ନୂଆ ଫେସନ । ତୁମ ଆଖିରେ ଯାହା ସାଦା କାଗଜ, ବଡ଼ବାବୁଙ୍କ ପାଖରେ ତାହା କବିତାର ଉତ୍ସ ।

ପ୍ରାଣକୃଷ୍ଣବାବୁ ଏତେଗୁଡ଼ାଏ କଥା କିଛି ବୁଝିପାରିଲେ ନାହିଁ । ରବୀନ୍ଦ୍ର ନାମଟା ଶୁଣି କହିପକାଇଲେ—ହଁ, ହଁ, ସେ ରବୀନ୍ଦ୍ରବାବୁଙ୍କୁ ମୁଁ ଚିହ୍ନେ । ସେ ଖାସମାହାଲ ଅଫିସର ଥିଲେ । ଏବେ ତାଙ୍କ······

ମାଧବବାବୁଙ୍କ ଧମକରେ ସେ ଚୁପ୍ ହୋଇଗଲେ ।

—୭—

ଏହା ଭିତରେ ତିନୋଟି ମାସ କଟିଛି ମାତ୍ର । କେବଳ ଛଅ ଖଣ୍ଡି ଲଫାପା ଆସିଛି, ବଡ଼ବାବୁ ଦେଇଛନ୍ତି ଆଠ ଖଣ୍ଡି ।

ସପ୍ତମ ଲଫାପାଖଣ୍ଡି ଅଫିସରେ ପାଇ ବିପ୍ରବାବୁ ମେସକୁ ଫେରିଲେ । ଆଜି ମନ ନିହାତି ଖରାପ । ଏହା ଭିତରେ ସୁପରିଣ୍ଟେଣ୍ଡେଣ୍ଟ ଥରେ ଦୁଇ ଥର ଛୁଟି ନେବାପାଇଁ ଏକାନ୍ତରେ କହିଲେଣି । ଗୋଟାଏ କଅଣ ପର୍ବ ଯୋଗେ ସୋମବାରଟା ଛୁଟି ଥିଲା । ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଉତ୍ତର ବିପ୍ରବାବୁ ଗାଁକୁ ଯାଉଛି କହି ଯାଇ ଉଠିଲେ ପୁଣିଥରେ । କେତେ ଦିନ ଏପରି ଲୁଚି ଛପି ବୁଲିବେ ? ଘରେ ବୋଉ ଅଛି, ବାପା ଅଛନ୍ତି, ନ ଗଲେ ବା କପରି ? ସେମାନେ ଭାବିବେ କଅଣ ?

ଅନ୍ୟମନସ୍କ ହୋଇ ସେ ଲଫାପାଟି ଚିରି ପକାଇଲେ । ଭିତରୁ କାଗଜଖଣ୍ଡିକ ବାହାର କରି ଫୋପାଡ଼ି ଦେଉଥିଲେ, ହଠାତ୍ ଆଖି ପଡ଼ିଗଲା—ସେ କାଗଜର ଗୋଟିଏ କୋଣରେ କଅଣ ପଦେ ଲେଖା ହୋଇଅଛି । ତାଙ୍କର ବଡ଼ କୌତୂହଳ ହେଲା । ଭାଙ୍ଗି ଭଲ କରି ଫିଟାଇ ଦେଖିଲେ, କେଉଁଠି କିଛି ନାହିଁ, କେବଳ ଶେଷ କୋଣରେ ଲେଖା ହୋଇଅଛି—ଏ ଶନିବାର ଦିନ ଟିକିଏ ଆସିବେ କି ?

ସେ ଦିନ ଶୁକ୍ରବାର । ପର ଦିନ ନିତାନ୍ତ ଅନିଚ୍ଛା ସତ୍ତ୍ୱେ ଅଫିସ କାମ ସାରି ସେ ସାଇକେଲରେ ଗାଁକୁ ବାହାରିଲେ । ମନରେ ଆଶା ନାହିଁ କି ନୈରାଶ୍ୟ ନାହିଁ । ଛେଳିକୁ ବଳି ଖୁଣ୍ଟକୁ ନେଲା ଭଳି ମନ ହେଉଥାଏ । ଆଜି କିଛି ଅପମାନ ପାଇବାକୁ ହେବ, ରାତିଟା ଗୁହିଁ ଗୁହିଁ କଟିବ—ଏହି ଭାବନା ମନକୁ ଚକଟି ପକାଉଥାଏ । ଏଣେ ନ ଯାଇ ମଧ୍ୟ ଉପାୟ ନାହିଁ—ମନ ଯେ ଜମା ମାନୁ ନାହିଁ ।

× × × ×

ରାତରେ ଘର ତଳେ ଶପଟି ପକାଇ ବଡ଼ବାବୁ ଶୋଇ-ପଡ଼ିଲେ । ଘରର ସାଜସଜ୍ଜା ଆଜ ତାଙ୍କୁ ନୂଆ ପରି ଲାଗିଲା । ଖଟ ଉପରେ ଧୋବ ଫରଫର କୋମଳ ବିଛଣା । ଗୋଟାଏ କିଛି ଅଜଣାର ମହକ ବାସନା ତାଙ୍କ ମନକୁ କେମିତି କେମିତି କରି ପକାଇଲା । ମାତ୍ର ନିର୍ବିକାର ଚିତ୍ତରେ ସେ ଶପଉପରେ ତାଙ୍କ ସୁକୁମାରୀ ଶଯ୍ୟାସାଥୀ ତକିଆଟିକୁ ମୁଣ୍ଡତଳେ ଦେଇ ଆରାମରେ ଶୋଇ ଘୁଙ୍ଗୁଡ଼ି ମାରିଲେ ।

କେତେବେଳ ଶୋଇଅଛନ୍ତି ତାଙ୍କୁ ମାଲୁମ ନାହିଁ । ନରମ ହାତର ମଧୁର ସ୍ପର୍ଶରେ ଗୁଙ୍ଗୁଡ଼ିକନା ବନ୍ଦ ହୋଇଗଲା । ଆଖି ଫିଟାଇ ଦେଖିଲେ, ପାଖରେ ବସିଅଛନ୍ତି ସୁକୁମାରୀ ଦେବୀ, ମୁହଁଟା ହସହସ ।

ବଡ଼ବାବୁ ଧଡ଼ପଡ଼ ହୋଇ ଉଠି ବସିପଡ଼ିଲେ । ଟିକିଏ ସମୟ ମୌନ ରହି, କଅଣ କହିବାକୁ ଯାଉଥିଲେ, ସୁକୁମାରୀ କହିଉଠିଲେ—ଏ ତାମସା ଆଉ ଭଲ ଲାଗୁ ନାହିଁ । ତୁମେ ଆଉ ଗୋଟାଏ କିଛି ନୂଆ ତାମସା ବାହାର କର ।

ବଡ଼ବାବୁ ନୂଆ ସମ୍ବୋଧନରେ ଚମକିଉଠିଲେ । କେଉଁ ଅଜ୍ଞାତ ଦୋଷରେ ସତେ ଯେପରି ଦୋଷୀ, ସେହି ଭୟରେ ସେ କହିଲେ—ବୋଉ, ବାପା କେହି କିଛି ଜାଣିପାରିଲେ କି ? ଆପଣ ତେବେ ଏଥର ଚିଠିରେ ଆସିବା ପାଇଁ ମୋତେ ଲେଖିଲେ କାହିଁକି ?

—"ନା, ନା, ଆଉ ଆପଣ ଫାପଣ ନୁହେଁ, ତୁମେ କହିବାକୁ ହେବ ।"

ବିପ୍ରବାବୁ କିଛି ବୁଝିପାରିଲେ ନାହିଁ । ସୁକୁମାରୀ କେତେକ ସମୟ ଚୁପ୍‌ଚାପ୍ ବସିରହିଲେ । ତା ପରେ କହିଲେ—"ହଁ, ମୁଁ କହୁଥିଲି, ଏ ଅଭିନୟ ଆମକୁ ଛାଡ଼ିବାକୁ ହେବ ।"

କଥାଟା ବିପ୍ରବାବୁଙ୍କ ଏପରି ଅବୋଧ ବୋଧ ହେଲା, ସ୍କୁଲରେ ଜ୍ୟାମିତିର 'ଥିଓରି' ମଧ୍ୟ ଏତେ ଅବୋଧ ହୋଇ ନ ଥିଲା ।

ପୁଣି ସୁକୁମାରୀ କହିଲେ—"ଉପରକୁ ଚାଲ, ଖଟଉପରେ ଶୋଇବ ।"

—"ଆପଣ, ନା ନା, ତୁମର ଅସୁବିଧା ହେବ । ମୁଁ ଏଇଠି ବେଶ୍ ଶୋଇପଡ଼ିବି ।"

—"ନା, ଏତେ ବଡ଼ ଖଟ, ଦୁଇ ଜଣଙ୍କୁ ବେଶ୍ ଜାଗା ହେବ ଯେ !"

ଖଟଉପରକୁ ନ ଯାଇ ବିପ୍ରବାବୁ ଶପରେ ଶୋଇ-ପଡ଼ିଥିଲେ । ସୁକୁମାରୀ ତାଙ୍କ ହାତ ଧରି ଖୁବ୍ ଜୋରରେ ଖଟ ଉପରକୁ ଟାଣିଆଣିଲେ । ବିପ୍ରବାବୁ ସୁପରିଣ୍ଟେଣ୍ଡେଣ୍ଟ କନ୍ୟାଙ୍କ ଆଦେଶ ଅମାନ୍ୟ କରି ନ ପାରି ଅନିଚ୍ଛା ସତ୍ତ୍ୱେ ଖଟଉପରକୁ ଆସିଲେ; ଖଟର ଗୋଟିଏ କଡ଼ରେ କାନ୍ଥମୂଳକୁ ମୁହଁ କରି ଜଡ଼ସଡ଼ ହୋଇ ଶୋଇପଡ଼ିଲେ ।

ସୁକୁମାରୀ ଖଟ ଉପରେ ଶୋଇ କାନ୍ଥ ମୂଳରୁ ତାଙ୍କୁ ପାଖକୁ ଟାଣିଆଣିଲେ । ମୁହଁଟାକୁ ମଧ୍ୟ ନିଜ ଆଡ଼କୁ ଜୋରରେ ବୁଲାଇ-ଦେଲେ ।

ପରଦିନ ନିଶ୍ଚୟ ଦୁହିଁଙ୍କ ନିଦ ଏକାବେଳକେ ଭାଙ୍ଗିଥିବ; ଆଉ ସେତେବେଳକୁ ଦିନ ହୋଇଯାଇଥିବ ଆଠଟା ।

———

# କ ଥିଲା କ ହେଲା ରେ

ସୂର୍ଯ୍ୟ ପଶ୍ଚିମରେ ଉଦୟ ହେବା ଉପମାଟା ନହାତି ମରହଣ୍ଟିଆ—ସେ କଥା ଗୁଡ଼ୁହଆଯାଉ । ମିଷ୍ଟର ଚର୍ଚ୍ଚିଲ ଯୁଦ୍ଧ ଜଣିବାକୁ ଗାନ୍ଧିଜୀଙ୍କ ପରାମର୍ଶ ନେବା ପାଇଁ ଆସି ସେବାଗ୍ରାମରେ ଧାରଣା ଦେଇ ପଡ଼ିଅଛନ୍ତି—ଏ ସମ୍ବାଦରେ ମୁଁ ଯେତେ ବିଚଳିତ ହୋଇ ନ ଥାନ୍ତି, ତା ଅପେକ୍ଷା ବେଶୀ ବିଚଳିତ ହୋଇପଡ଼ିଲି, ଯେତେବେଳେ ଶୁଣିଲି ଯେ,ମୋର ବନ୍ଧୁ କମ୍ରେଡ଼ ଅସୀମ ନାୟକ ବିବାହ ହେବାପାଇଁ ସମ୍ମତି ଦେଇଅଛି । ଏକା ମୁଁ କାହିଁକି, ଅସୀମର ଯେତେ ସହପାଠୀ ସହଶାଠୀ, ସହକର୍ମୀ ସହଧର୍ମୀ, ସହସେବୀ ସହଅସେବୀ ବନ୍ଧୁବାନ୍ଧବ ଥିଲେ; କେହି ହେଲେ ଏ କଥାକୁ ପ୍ରଥମେ ବିଶ୍ୱାସ କରିପାରିଲେ ନାହିଁ ; ବିଶ୍ୱାସ ନ କରିବାର ହିଁ କଥା । କାଉଁରିଆ ଭାଙ୍ଗିବ ପଛକେ ନଇଁବ ନାହିଁ । ମାତ୍ର କାଉଁରିଆ ଭାଙ୍ଗି ନାହିଁ, ନଇଁଛି । କମ୍ରେଡ଼ ଅସୀମ ଯେ ଭୀଷ୍ମ ପ୍ରତିଜ୍ଞା କରିଥିଲା, ମୁଁ ଘର ସଂସାର କରିବାକୁ ମନରେ କଳ୍ପନା ସୁଦ୍ଧା କରିବି ନାହିଁ; ଦେଶ ପାଇଁ ମୋର ଜୀବନ ବଳି ଦେବି—ତା ଟଳିଛି । ସେ ରାଜି ହୋଇଛି—ଦେଶ ପାଇଁ ଜୀବନ ବଳି ଦେବାଲାଗି ନୁହେଁ, ବିବାହ ହେବାଲାଗି ।

ଅବଶ୍ୟ ନିତାନ୍ତ ଶିଶୁବେଳର କଥା ମୁଁ କହିପାରିବି ନାହିଁ । ଯେଉଁମାନେ ଭବିଷ୍ୟତରେ ଅସୀମର ଜୀବନଚରିତ

ଲେଖିବେ, ସେମାନେ ସେ ସମସ୍ତ କଥା ଅନୁସନ୍ଧାନ କରିପାରନ୍ତି । କିନ୍ତୁ ଗାଁ ସ୍କୁଲରେ ପଢ଼ିବା ଦିନଠାରୁ ମୁଁ ଜାଣେ ଯେ, ଅସୀମ ବଡ଼ ନିର୍ଭୀକ, ସାହସୀ ଓ ଜିଦ୍‌ଖୋର । ସେହି ଅଳ୍ପ ବୟସରେ ମଧ୍ୟ ସେ ସ୍କୁଲ୍ ମାଷ୍ଟରଙ୍କୁ ଅନେକ ଥର ପାଣି ପିଆଇଦେଇଛି ।

ଥରେ ଗୋଟିଏ ଗୁରୁଭକ୍ତ ଗ୍ରୀବ ସୁନାପିଲା ହେବାପାଇଁ ମାଷ୍ଟରଙ୍କ ଲାଗି ଘରୁ ଅତି ଯତ୍ନରେ ତିଆରି ହୋଇଥିବା ପିଠା ନେଇଆଣିଥିଲା । ମାଷ୍ଟରଙ୍କ ବେତକୁ ଟିକିଏ ହେଲେ ଖାତିର ନ କରି ସେ ସବୁଯାକ ପିଠା ଅସୀମ ନିଜ ପେଟକୁ ପକାଇ ଦେଲା । ମାଷ୍ଟରଙ୍କ ଟେବୁଲ ଉପରେ ହସ୍ତାକ୍ଷର ଖାତା ଭିତରେ ଲୁଚି ରହିଥିବା ବିଡ଼ି ଅସୀମ ନିର୍ବିକାର ଭାବରେ ଅନେକ ସମୟରେ ଟାଣି ପିଲାଙ୍କ ଆଗରେ ନାକବାଟେ ଧୂଆଁ ଗୁଡ଼ି ବାହାଦୂରୀ ନେଇଅଛି । ଗଣେଶ, ସରସ୍ୱତୀ ପୂଜାରେ ଦିଅଁଙ୍କ ଭୋଗ ଖାଇଲେ ପାଠ ଆସିବ ନାହିଁ—ଏ ସତ୍ୟ ସମସ୍ତେ ଜାଣିଥିଲେ ସୁଦ୍ଧା ଲୁଚେଇ, କେତେବେଳେ କପଟ ଜୋର୍ ଜବରଦସ୍ତି କରି ସେ ଭୋଗସବୁ ଖାଇଛି—ତଥାପି ତାର ପାଠ ହୋଇଛି ।

ଏହିପରି ଗାଁ ମାଷ୍ଟର ଆଉ ମା ସରସ୍ୱତୀଙ୍କୁ ଡରାଇ ସେ ସ୍କୁଲରୁ ପାଶ କରି କଟକ ପଢ଼ିବାକୁ ଆସିଲା । କଟକରେ ତାର ଆଖି ଖୋଲିଗଲା, କର୍ମପନ୍ଥା ବଢ଼ିଗଲା । କ୍ଳାସ ପିଲାମାନଙ୍କୁ ଏକଯୁଟ କରି ସେ ହେଲା ତାଙ୍କ ନେତା । ସଭା ସମିତି କରିବା, ସ୍ୱାଧୀନତା ଦିବସରେ ପତାକା ଉଡ଼ାଇବା, ବିଭିନ୍ନ ଅନୁଷ୍ଠାନରେ ସ୍ୱେଚ୍ଛାସେବକ ହେବା, ବଡ଼ି ସମୟରେ ଗାଁ ଗାଁ ବୁଲି ଚୂଡ଼ା ଗୁଡ଼ଜଳ ବାଣ୍ଟିବା ଇତ୍ୟାଦି ସବୁ କାମରେ ପ୍ରଥମେ ଅସୀମ । ଆମେମାନେ ଯେତେବେଳେ ମାଷ୍ଟରଙ୍କ ତର୍ଜନ ଗର୍ଜନରେ ଗ୍ରୁନିଆଁ, ସେତେ-

ବେଳେ ସେ ଏପରି ସୋକ୍‌ଠୋକ୍ ଜବାବ ଦେଇ ମାଷ୍ଟରଙ୍କୁ ଜବତ କରିଦିଏ ଯେ, ଆମେ ତାକୁ ମନେ ମନେ ହିଂସା ନ କରି ରହିପାରୁ ନାହିଁ । କ୍ଲାସଭିତରେ ସବୁ ଛାତ୍ରଙ୍କ ଆଗରେ ଅନେକ ମାଷ୍ଟରଙ୍କୁ ସେ ଅପଦସ୍ତ କରିଛି; ଫଳରେ କେତେ ଥର ବେତ ମାଡ଼ ଖାଇଛି, ନିର୍ଯାତନ ହୋଇଛି, ଜୋରିମାନା ଦେଇଛି; ତଥାପି ସେ ଦବି ନାହିଁ । ସବୁବେଳେ ହିଁ ତାର ଜିଦ୍ ବଜାୟ ରହିଛି । ମାଷ୍ଟରମାନେ ମୁଣ୍ଡ ନୁଆଇଁଛନ୍ତି ବରଂ ସେ ଟିକିଏ ହେଲେ ତଳମୁହାଁ ସୁଦ୍ଧା ହୋଇ ନାହିଁ ।

କଲେଜରେ ଅସୀମର କାର୍ଯ୍ୟକାରୀ କ୍ଷମତା ଆହୁରି ବଢ଼ିଗଲା । ଦେଶସେବା ଛାଡ଼ି ବିଶ୍ୱସେବାରେ ସେ ବେଶୀ ମାତିଉଠିଲା । ଜାପାନରେ ଭୂମିକମ୍ପ ଦ୍ୱାରା ବହୁଲୋକ ବିପନ୍ନ ହୋଇଛନ୍ତି— ସେଠାକୁ ସାହାଯ୍ୟ ପଠାଇବା ପାଇଁ ଚାନ୍ଦା ଆଦାୟ କରିବା; ଇଂଲଣ୍ଡର ବୈଦେଶିକ ମନ୍ତ୍ରୀ କମ୍ୟୁନିଜିମର ଦୁର୍ନାମ ରଟିଛନ୍ତି— ତାଙ୍କୁ ନିନ୍ଦା କରି ସଭାରେ ପ୍ରସ୍ତାବ ଗ୍ରହଣ କରିବା; ମୁସୋଲିନି ଆବିସିନିଆ ଦଖଲ କରିଛନ୍ତି—ତାଙ୍କୁ ଛି ଛି କରି ସମ୍ବାଦପତ୍ରରେ ବିବୃତି ଛାପିବା—ଏହି ସବୁ ହେଲା ତାର କାମ ।

କିଛି ଦିନ ଚିନ୍ତାଘର କଣ୍ଡା ପରି ଏପାଖ ସେପାଖ ହୋଇ ଶେଷକୁ ସେ ତାର କାର୍ଯ୍ୟପନ୍ଥା ସ୍ଥିର କରିନେଲା— କମ୍ୟୁନିଷ୍ଟ ପାଲଟିଗଲା । ନିଜ ନାମ ପୂର୍ବରୁ ଶ୍ରୀ ବା ଶ୍ରୀଯୁକ୍ତ ପରିବର୍ତ୍ତେ କମ୍ରେଡ଼ ଲଗାଇଲା । କଲେଜ ପ୍ରଫେସର ପ୍ରମାଦ ଗଣିଲେ, ଘନିଷ୍ଠ ଅନ୍ତରଙ୍ଗ ସାଥିମାନେ ତାକୁ ଭୟ କରି ଦୂରରେ ରହିଲେ; ଆମେମାନେ ତାକୁ ଖାତିର୍ କଲୁ, ନେତା ବୋଲି ଧରିନେଲୁ ।

ଯେତେବେଳେ ଅସୀମର ନଣ ଦାଢ଼ି ଉଠିଲା, ସେତେବେଳକୁ ଭାରତର ସ୍ୱାଧୀନତା ଆନ୍ଦୋଳନ ଖୁବ୍ ଜୋର୍‌ସୋର୍‌ରେ ଚାଲିଥାଏ। ସେ ନଣ ଦାଢ଼ି କାଟିଲା ନାହିଁ, ତା ସାଙ୍ଗକୁ ମୁଣ୍ଡର ବାଳଯାକ ମଧ୍ୟ ଛାଡ଼ିଦେଲା। ତାର ପ୍ରତିଜ୍ଞା ହେଲା—ଯେ ପର୍ଯ୍ୟନ୍ତ ସାରା ବିଶ୍ୱର ନିଷ୍ପେଷିତ ଶ୍ରମିକ ଧନୀ ଜମିଦାର, ମିଲ୍‌ମାଲିକଙ୍କ କବଳରୁ ନ ମୁକୁଳିଛନ୍ତି, ସେ ପର୍ଯ୍ୟନ୍ତ ସେ ଦାଢ଼ି କାଟିବ ନାହିଁ; ଯେ ପର୍ଯ୍ୟନ୍ତ ପୃଥିବୀ-ବକ୍ଷରୁ ସାମ୍ରାଜ୍ୟବାଦ ଲୋପ ନ ପାଇଛି, ସେ ପର୍ଯ୍ୟନ୍ତ ସେ ନଣ ଛାଟିବ ନାହିଁ ଏବଂ ଯେ ପର୍ଯ୍ୟନ୍ତ ଭାରତ ସ୍ୱାଧୀନ ନ ହୋଇଛି, ସେ ପର୍ଯ୍ୟନ୍ତ ସେ ବାଳ ବଢ଼ାଉଥିବ।

କଲେଜ ଛାଡ଼ି ଅସୀମ କର୍ମକ୍ଷେତ୍ରରେ ଅବତରଣ କଲା। ତାର ନିର୍ଭୀକ ସମାଲୋଚନା, ଖୋଲ୍‌ଖୋଲ୍ ଜବାବ ଓ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ପର୍ବତ ପରି ଅଟଳ ହୋଇ ଠିଆ ହେବା ସ୍ୱଭାବ ଯୋଗୁଁ ହିଁ ହାକିମଠାରୁ ଗାଁ ଚୌକିଦାର ପର୍ଯ୍ୟନ୍ତ ପ୍ରମାଦ ଗଣିଲେ। ଫଳରେ ଅସୀମକୁ ନାନା ଲାଞ୍ଛନା, ନାନା ନିର୍ଯ୍ୟାତନା ସହିବାକୁ ପଡ଼ିଲା। ସେ କେତେ ଥର ଅସହ୍ୟ ବେତମାଡ଼ ଖାଇଲା, କେତେ ଥର ଜେଲରେ ଘଣା ପେଳିଲା, ତା ଘରର ସମ୍ପତ୍ତିବାଡ଼ି ନିଲାମ ହେଲା; ତଥାପି ସେ ଟଳିଲା ନାହିଁ। ବରଂ ତାର କର୍ମଶକ୍ତି ବଢ଼ି ଉଠିଲା। ସବ୍‌ଜାନ୍ତା ହାକିମମାନେ ଯେପରି ତାକୁ ଭୟ କଲେ, ସବ୍‌କରତା ନେତାମାନେ ମଧ୍ୟ ସେହିପରି ଗୁଣିଆଁ ହେଲେ। ଅସୀମର ତେଜ ଦବିବାର ନୁହେଁ—ଦବିଲା ନାହିଁ।

ସେହି ଅସୀମର ବିଭବଘର। ପୁଣି କେତେବେଳେ ନା, ଯେତେବେଳେ ପୃଥିବୀରେ ସାମ୍ରାଜ୍ୟବାଦର ପ୍ରାଧାନ୍ୟ ବଢ଼ି

ଚୁଲିଛି; ସାମ୍ୟବାଦର ଗୁରୁ ରୁଷିଆ ବିପନ୍ନ; ଏଣେ ଗାନ୍ଧିଜିଙ୍କୀ ପୂର୍ବ ପଶ୍ଚିମକୁ ମୁହଁ ମୋଡ଼ିଦେଇ ଠିଆ ହୋଇଅଛନ୍ତି । ଦେଶର ନେତାମାନେ ଜେଲଘରେ ସଡ଼ୁଛନ୍ତି; ହଜାର ହଜାର ଲୋକ ଖାଇବାକୁ ନ ପାଇ ପୋକମାଛି ପରି ମରୁଛନ୍ତି । ଏତିକିବେଳେ ଅସୀମର ବିବାହ—ଏଇଟା କଣ ଅସମ୍ଭବ ନୁହେଁ ?

ଅସମ୍ଭବ ହିଁ ସମ୍ଭବ ହୁଏ । କମ୍ରେଡ଼ ଅସୀମ ସେହି କଠୋର ଭାବ, ଦୁର୍ଦ୍ଧର୍ଷ ଚିନ୍ତା ଓ ସବୁଠାରୁ ବଳି ରକ୍ଷ ଚେହେରା ଧରି ବିବାହ ହେବାକୁ ଗଲା । ବୁଢ଼ାବୁଢ଼ୀମାନେ ନିଶ ଦାଢ଼ି କାଟିଦେବାକୁ ଉପଦେଶ ଦେଲେ, ସାଥୀମାନେ ମୁହଁଟାକୁ ଟିକିଏ ସରସ ଓ ନରମ କରିବାକୁ ନିର୍ଦ୍ଦେଶ ଦେଲେ, ବନ୍ଧୁମାନେ ମୁଣ୍ଡରେ ଟିକିଏ ତେଲ ଲଗାଇ ଚିକ୍କଣ କରିବାକୁ ପରାମର୍ଶ ଦେଲେ; ମାତ୍ର ଫଳ କିଛି ହେଲା ନାହିଁ । ଅସୀମ ସେହି ତେଜ, ସେହି ଦମ୍ଭ, ସେହି ଏକଜିଦିଆ ସ୍ୱଭାବ ଧରି ନୁଖୁରା ମୁଣ୍ଡ ବାଳ ଫୁରୁଫୁରୁ ଉଡ଼ାଇ, ମୁହଁରେ କଣ୍ଟକ ସହର ଭିତରେ ଥିବା ଜଙ୍ଗଲ ପରି ଦାଢ଼ି ନିଶ ରଖି ପାଲିଙ୍କିରେ ବସିଲା । ତାର ପର ଘୃଣ୍ୟ ବ୍ରାହ୍ମଣ ପୁରୋହିତ ଓ ଅବୁଝା ମନ୍ତ୍ରର ସେ ଶରଣ ପଶିଲା । ଦୁଇ ଦିନ ଖାଡ଼ା ଉପାସରେ ବସିରହି ସେ ନିଆଁରେ ସିଝିଲା । ସେତେବେଳେ ସେ ଭୁଲିଗଲା, ସିଭିଲ୍ ସପ୍ଲାଇ ଅଫିସର କିପରି ପକ୍ଷପାତ କରି ଚାଉଳ ଦେଉଛନ୍ତି, ଗ୍ରାମ ସେଠୀ ଦୁଇ ପଇସାର କେରୋସିନ ପାଇଁ ଯାଇ କିପରି ଏଜେଣ୍ଟଠାରୁ ଧକ୍କା ଖାଉଛି, ଅମୁକ କାରଖାନାରେ ମଜୁରିଆଙ୍କ ଉପରେ ଲାଠି ଚାଲୁଛି, ନିର୍ମମ ନିଷ୍ଠୁର ହିଟଲର କିପରି ରୁଷିଆ ତୋଟି ଚିପି ଧରିଛି ।

ଯାହାହେଉ ବଷଘର ହୋଇଗଲା । ବରକନ୍ୟା ବିଦା ବେଳେ କନକ ବଡ଼ ବିକଳରେ ବାପା ବୋଉଙ୍କ ପାଖରେ ବାହୁନି କାନ୍ଦିଥିଲା—"ମୋତେ ଯମ ହାତରେ ସମର୍ପି ଦେଉଅଛ;ଯମପୁରକୁ ଠେଲି ଦେଉଅଛ ।"କନକ ଶିକ୍ଷିତା,ଆଧୁନିକ ବାତାବରଣ ଭିତରେ ସେ ବଢ଼ିଛି । ସେ ଯେ ଉପରଠାଉରିଆ ଭାବରେ ନ କହି ପ୍ରକୃତ ତା ଅନ୍ତରର କଥା କହୁଛି, ଏହା ବାପା ବୋଉ ଅନୁଭବ କଲେ, ଟିକିଏ ମର୍ମାହତ ହେଲେ ମଧ୍ୟ; ମାତ୍ର ସେତେବେଳକୁ ଆଉ ଉପାୟ ନ ଥିଲା ।

ନିବିଡ଼ ଜଙ୍ଗଲକୁ ଶିକାର କରିବାକୁ ଯାଇ ଯଦି ଟଙ୍ଗାରେ ଶୋଇ ଅନ୍ଧକାର ରାତି କଟାଇଲାବେଳେ ଖବର ପାଇବ ଯେ,ପାଖ ଆଖରେ କେଉଁଠି ବାଘ ଲୁଚିରହିଛି, ସେତେବେଳେ ତୁମର ଅବସ୍ଥା କଅଣ ହେବ ,ତାହା ଜାଣିବାକୁ ଇଚ୍ଛା ଥିଲେ, ଫୁଲଶଯ୍ୟାରେ ଅସୀମ ପାଖରେ ରାତ୍ର କଟାଇଥିବା କନକକୁ ପଚାରିଲେ ସ୍ପଷ୍ଟ ବୁଝିପାରିବ ।

× × × ×

ବର୍ଷ ପୂରି ନାହିଁ, ଛ ମାସ ବି ଯାଇ ନାହିଁ, ମୋଟେ ମାସକ ପରର କଥା । ମୁଁ ସେତେବେଳେ ଅସୀମକୁ ଦେଖିଲି, ସେତେବେଳେ ତାକୁ ଆଦୌ ଚହ୍ନିପାରିଲି ନାହିଁ । ମୁର୍ଦ୍ଧ ଖଦ୍ଦରର କାଠଯୋଡ଼ ବାଲଶଯ୍ୟା ପରି ଚକ୍‌କଣ ସଫା; ମୁଣ୍ଡ ବାଳ ସିନେମା ଷ୍ଟାରଙ୍କ ଫେସନରେ କଟାହୋଇ ତେଲ ଘୁଡ଼ୁବୁଡ଼ୁ, ଆଖି ଦୁଇଟାରେ ସରସତା, ମୁହଁରେ କୋମଳ ଛନଛନିଆ ଭାବ ଫୁଟିଉଠୁଛି । ତା କାଖରେ ଖଣ୍ଡେ ଦାମିକା ଶାଢ଼ୀ, ହାତରେ ସ୍ନୋ-ପାଉଡ଼ର, ତେଲ-ସାବୁନ ବଣ୍ଡିଲ ।

ମୁଁ ପ୍ରଥମେ ଟିକଏ ବୋକା ବନିଗଲି । ଗୃଷୀ ମୂଲିଆଙ୍କ ଦୁର୍ଦ୍ଦଶା କମି ନାହିଁ, ଜଗତ ସାମ୍ରାଜ୍ୟବାଦ କବଳରୁ ମୁକ୍ତ ହୋଇ ନାହିଁ କି ଭାରତ ସ୍ୱାଧୀନ ହୋଇ ନାହିଁ—ଏ ହେଲା କଅଣ ?

କେତେକ କଥାବାର୍ତ୍ତା—ଅବଶ୍ୟ କେବଳ ବାହାଘର ଓ କନକର କବାଟକିଳା କଥା ପରେ ଅସୀମ କହିଲା, "ଭାଇ, ଲୁଗା-ବଜାର କଥା କହ ନାହିଁ । ପୂରା ପାଞ୍ଚଘଣ୍ଟା ବୁଲି ବୁଲି ବହୁ ଖୁସା-ମତ୍, ନେହୁରାମନ୍ଦ ପରେ ଗୁମାସ୍ତାକୁ ଆଠଅଣା କଳାପୋତେଇ ଦେଇ ଏ ଲୁଗାଖଣ୍ଡି ପାଇଛୁ । ପୁଣି ଦାମ କେତେ ଜାଣୁ ?—ଏକାବେଳକେ ପଇଁତିରିଶ ଟଙ୍କା; ଲେଖା ହୋଇଥିବା ଦାମର ତିନିଗୁଣ । ଏତେ ଦାମ ଦେଇ ମଧ୍ୟ କଅଣ ସହଜରେ ମିଳୁଥିଲା ? ଏଥିପାଇଁ ସପ୍ଲାଇ ଇନ୍‌ସପେକ୍‌ଟରଙ୍କୁ ଧରି ବହୁତ କାରସାଦି କରିବାକୁ ପଡ଼ିଲା ।"

ମୁଁ ଗୃଉଳ ଟିକଟ ଆଣିବାକୁ ଯାଇ ଅଫିସରେ ଅପମାନ ପାଇଥିଲି । ତାର ପ୍ରତିକାର ପାଇଁ ଅସୀମର ଆଶ୍ରା ନେବି ବୋଲି ବହୁ ଆଗରୁ ଠିକ୍ କରି ରଖିଥିଲି । ମାତ୍ର ଅସୀମର ଏ କଥା ଶୁଣି ମୋ କଥା ମୋ ପେଟରେ ହିଁ ରହିଗଲା ।

'ଯାଉଛୁ ଭାଇ, ବିଳମ୍ବ ହୋଇଗଲାଣି'—କହି ଅସୀମ ଖୁବ୍ ଦ୍ରୁତଗତିରେ ଘରମୁହାଁ ଗ୍ଲଲିଲା ।

ମୁଁ କଳ୍ପନାନେତ୍ରରେ ଦେଖିନେଲି—ଅସୀମର ବୋଉ କନକକୁ ଆଶୀର୍ବାଦ କରି କହୁଛନ୍ତି, କନକ ମୋ ଘରର ଲକ୍ଷ୍ମୀ; ସେ ବଣର ସିଂହକୁ ପୋଷା ମନାଇ ମୂଷା କରିପାରିଅଛି ।



## ···ନିବେଶି ପୁତ୍ର ପାଶେ

ପଣ୍ଡିତ ଗଜରାଜ ଶର୍ମା ତର୍କବାଗୀଶ ସତଚାଳିଶ ବର୍ଷ ବୟସରେ ନିଜର ଚତୁର୍ଥ ପକ୍ଷ ସ୍ତ୍ରୀ ଯଶୋଦାକୁ ହରାଇ ନିତାନ୍ତ ଅଧୈର୍ଯ୍ୟ ହୋଇପଡ଼ିଲେ । ଅଧୈର୍ଯ୍ୟ ହୋଇପଡ଼ିବାର କଥା । ପ୍ରଥମା ଯାଉଥିଲି, ଦ୍ୱିତୀୟା ଗଲି । ତେଣୁ ପଣ୍ଡିତ ମହାଶୟ ଶାସ୍ତ୍ରାନୁସାରେ ତୃତୀୟରେ ଗୋଟିଏ ସାହାଡ଼ା ବୃକ୍ଷକୁ ବିବାହ କଲେ । ବିବାହ କଲେ ସିନା; କିନ୍ତୁ ତଦ୍ଦ୍ୱାରା ତାଙ୍କ ମନକାମନା ପୂର୍ଣ୍ଣ ହେଲି ନାହିଁ । ପଣ୍ଡିତଙ୍କର କାମନା, ଗୋଟିଏ ପୁତ୍ର ଜାତ କରାଇ ଇହକାଳର ଚତୁର୍ଥ ଯୁଗରେ ତା ଉପରେ ସଂସାରର ସମସ୍ତ ଭାର ରୂପି ତୀର୍ଥ-ଯାତ୍ରୀ ହେବା ଓ ପରକାଳରେ ପୁତ୍ ନାମକ ନରକରୁ ତ୍ରାହି ପାଇବା । ସାହାଡ଼ା ବୃକ୍ଷଦ୍ୱାରା ତାହା ସମ୍ଭବ ହୋଇଥିଲେ କଅଣ ବା ହୁଅନ୍ତା; କିନ୍ତୁ ପଣ୍ଡିତ ମହାଶୟଙ୍କର ନିତାନ୍ତ ଶତ୍ରୁ ମଧ୍ୟ ସ୍ୱୀକାର କରିବ ଯେ, ଏହା ଏକାବେଳକେ ଅସମ୍ଭବ । ତେଣୁ ପଣ୍ଡିତ ମହାଶୟ ବାଧ୍ୟ ହୋଇ କୋଡ଼ିଏ ଷୋଳବର୍ଷ ବୟସରେ ପାଞ୍ଚକୋଡ଼ି ପନ୍ଦର ଟଙ୍କା ଜରିମାନ ଦେଇ ନଅ ବର୍ଷର ଗୌରୀ ଯଶୋଦାକୁ ନିଜର ଜୀବନସଙ୍ଗିନୀ କରିଥିଲେ ଓ ଯଶୋଦାର ପିତାଙ୍କଠାରୁ ଗୌରୀଦାନ ରୂପ ମହାଦାନ ଗ୍ରହଣ କରି ବୈକୁଣ୍ଠପୁରର ବାଟ ନିଜ ପାଇଁ ଓ ନିଜର ଶଶୁରଙ୍କ ପାଇଁ ଫେଲାଇ ସଫା କରି ଦେଇଥିଲେ । କେତେକ ପରିମାଣରେ ତାହା ମଧ୍ୟ ହେଲି । ଯଶୋଦାର ପିତା ଖୁବ୍ ଶୀଘ୍ର ସ୍ୱବାଞ୍ଛିତ ସ୍ଥାନକୁ ଚାଲିଯିବାରୁ ଏକମାତ୍ର ସାତ ବର୍ଷର କୁଳଚନ୍ଦ୍ରମା ମଦନସୁନ୍ଦର ସହ ଯଶୋଦାକୁ ଆଣି ପଣ୍ଡିତ ମହାଶୟ ନିଜ ଘରେ ରଖିଲେ । ଘରେ ନ ରଖି, ନିଜ

ଦ୍ରବ୍ୟର ନିଜେ ହାତରେ ଯତ୍ନ ନ ନେଇ କରନ୍ତେ ବା କଅଣ ? ଜାଣୁ ଜାଣୁ କିଏ କଅଣ ପାଞ୍ଚକୋଡ଼ି ପନ୍ଦର ଟଙ୍କା ପାଣିକୁ ଫୋପାଡ଼ିଦିଏ ?

ଏ ସବୁ ଅଳ୍ପଦିନର କଥା । ଏହା ଭିତରେ ପଣ୍ଡିତ ମହାଶୟଙ୍କର ଏଗାରଟି ବର୍ଷ କଟି ଯାଇଥିଲା । ଯଶୋଦା ଗୃହଯୋଗ୍ୟା ହୋଇ ପଣ୍ଡିତ ମହାଶୟଙ୍କର ଓ ନିଜର ଗୃହଭାର ବହନ କରିବାକୁ ସକ୍ଷମ ହୋଇପାରିଥିଲେ । ପଣ୍ଡିତଙ୍କ ଦାମ୍ପତ୍ୟଜୀବନ କେବେ କନ୍ଦପଣା ପରି ମଧୁର ପ୍ରେମାଭିମାନରେ, କେବେ ବା ଅମ୍ଳତିକ୍ତକଟୁ ସମ୍ମାର୍ଜନୀର ସମ୍ମାର୍ଜନରେ ଯେନକେନ ପ୍ରକାରେଣ ଚାଲି ଆସୁଥିଲା । କିନ୍ତୁ ମନ୍ଦ ବିଧାତାର ପଣ୍ଡିତ ମହାଶୟଙ୍କ ଉପରେ ସବୁ ଦିନେ ଶତ୍ରୁତା । ଏ ସୁଖ ବା ସେ ସହନ୍ତା କେତେକେ ? ପଣ୍ଡିତ ମହାଶୟଙ୍କ ଚିରବାଞ୍ଛିତ ଗୋଟିଏ କୁଳଶିରୋମଣି ଜନ୍ମ ନ ହେଉଣୁ ପଣ୍ଡିତଙ୍କୁ ମହାଶୋକସାଗରରେ ଭସାଇ ଅହ୍ୟ ଠେଙ୍ଗୁରି ବଜାଇ ଯଶୋଦା ଏ ସଂସାରରୁ ବିଦାୟ ନେଲେ ।

× × × ×

ପଣ୍ଡିତ ଗଜରାଜ ଶର୍ମା ବାସ୍ତବିକ୍ ହିଁ ସ୍ୱନାମଧନ୍ୟ ବା ସାର୍ଥକନାମା । ତାଙ୍କର ପାଣ୍ଡିତ୍ୟ ଅଗାଧ—ତାର ଥଳ ନାହିଁ କି କୂଳ ନାହିଁ; ଆଦି ନାହିଁ କି ଅନ୍ତ ନାହିଁ । ପିତୃ-ପ୍ରଦତ୍ତ ନାମରେ ସନ୍ତୁଷ୍ଟ ହୋଇ ନ ପାରି ତାହା ପଛରେ ନିଜ ପ୍ରଦତ୍ତ ତତ୍ତ୍ୱବାଗୀଶ ପଦଟି ଯୋଗ କରିଅଛନ୍ତି । ଗାଁରେ ତାଙ୍କ ଭଳି ସଂସ୍କୃତଜ୍ଞ ପଣ୍ଡିତ, ବହୁଦର୍ଶୀ ଶାସ୍ତ୍ରଟୀକାକାର ତତ୍ତ୍ୱବିତ୍ ଖୁବ୍ କମ୍ କଅଣ, ଜମା ନାହାନ୍ତି କହିଲେ ଚଳେ । ତାଙ୍କର ତତ୍ତ୍ୱଜ୍ଞାନ କେତେ, ତତ୍ତ୍ୱବାଗୀଶ ପଦଟି କିପରି ସାର୍ଥକ ହୋଇଅଛି, ତାର ଭୂରି ଭୂରି ପ୍ରମାଣ ଅଛି ।

କେବଳ ଗୋଟିଏ ଦୁଇଟି ଜାଣିଲେ ତାଙ୍କର ତତ୍ତ୍ୱଜ୍ଞାନର ଗଭୀରତା ସହଜେ ବୁଝାଯାଏ ।

ହରି ସାହୁଙ୍କ ଭାଗବତ ବଢ଼ା ଦିନ ପଣ୍ଡିତେ ଭାଗବତ ବୋଲି ଶ୍ରୋତୃବୃନ୍ଦଙ୍କୁ ଟୀକା କରି ବୁଝାଉଥିଲେ । ଭଗବାନ ଉଦ୍ଧବଙ୍କୁ କହୁଅଛନ୍ତି; "ଯେତେକ ଦେଖ ନଦନଦୀ । ସମସ୍ତେ ମିଳନ୍ତି ଜଳଧି ।"

ପଣ୍ଡିତେ ବ୍ୟାଖ୍ୟା କଲେ—ଯେତେ ନଦନଦୀ ଅଛନ୍ତି, ସମସ୍ତେ ସମୁଦ୍ରରେ ପଡ଼ନ୍ତି; ଏହା କଅଣ ଉଦ୍ଧବ ଜାଣନ୍ତି ନାହିଁ ? ତାର ଅନ୍ତଃତତ୍ତ୍ୱ ବା ସୂକ୍ଷ୍ମ ଅର୍ଥ ଗୋଟିଏ ଅଛି—ଆମେ ପାଣି ପିଉଁ, ଦୁଧ ପିଉଁ, ମିଶ୍ରି ସର୍ବତ ପିଉଁ, କନ୍ଦ ପଣା ପିଉଁ ବା ଯାହା ପିଉଁ—ସେ ସବୁ ଯାଇ ଉଦର ରୂପୀ ସମୁଦ୍ରରେ ପଡ଼େ; କେହି ଅଲଗା ହୋଇ ରହେ ନାହିଁ । ସେତେବେଳେ—"ଆପଣା ଗୁଣ ପାସୋରନ୍ତି । ଲବଣ ଗୁଣକୁ ଭଜନ୍ତି ।" ଅର୍ଥାତ୍ ଦୁଧ ଦୁଧ ପରି ଆଉ ରହେ ନାହିଁ କି କନ୍ଦପଣାର ମିଠାଭି ରହେ ନାହିଁ । ସେତେବେଳେ ସବୁଯାକ ଲୁଣିଆ ହୋଇ ପରିସ୍ରାରୂପେ ଗୋଟିଏ ବାଟରେ ପଦାକୁ ବାହାରି ଆସେ ।

କାହ୍ନୁ ଦାସଙ୍କ ସତ୍ୟନାରାୟଣ ପୂଜାର ସଂକଳ୍ପ କରୁ କରୁ ହାତ ହଲାଇ ପଣ୍ଡିତ ମହାଶୟ କହି ଚାଲିଥାନ୍ତି—"ଇହଗଚ୍ଛ ଇହତିଷ୍ଠ ଇହ···।" ଗୋଟିଏ ପିଲା ସେତିକିବେଳେ ହଠାତ୍ ପଚାରିଉଠିଲା, "ପଣ୍ଡିତେ, ଇହଗଚ୍ଛ କଅଣ କି ?"

ପଣ୍ଡିତେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ—ମୋ ହାତରେ ଏ କଅଣ ? କୁଶ;—ଇହଗଛ ଅର୍ଥ କୁଶ ଗଛ ।

× × × ×

ଯଶୋଦା ମଲା ପରେ ପଣ୍ଡିତ ମହାଶୟ ଦେଖିଲେ ଯେ, ତାଙ୍କ ଘରେ ଗଣ୍ଡାଏ ନୂଷାଇ କରିଦେବାକୁ, ବେରାମରେ ପଡ଼ିଲେ ଟିକିଏ ସେବା ଶୁଶ୍ରୂଷା କରିବାକୁ ଆଉ କେହି ନାହିଁ । ଶଳା ମଦନସୁନ୍ଦର ବର୍ତ୍ତମାନ ଅଠର ବର୍ଷର ଭେଣ୍ଡିଆ । ତାକୁ ଲୋକଦେଖାଣିଆକୁ ଧର୍ମପୁଅ କରିଛନ୍ତି ସିନା, ସେଥିରେ ଶାସ୍ତ୍ର-ତତ୍ତ୍ୱଦର୍ଶୀ ପଣ୍ଡିତଙ୍କ ମନ ମାନେ କେତେକେ ? ଯେତେ ହେଲେ ପର ତ । ନିଜ ରକ୍ତରୁ ଯେ ଜାତ ହେବ, ସେ ଯେପରି ଶ୍ରାଦ୍ଧ ତର୍ପଣାଦି କରିବ, ଅପର ଲୋକ ସେପରି କରିପାରିବ କି ? ଠିକ୍ ରୂପେ ଶ୍ରାଦ୍ଧ ତର୍ପଣ ନ ପାଇଲେ ଏକା ତାଙ୍କ ଆତ୍ମା ନୁହେ, ତାଙ୍କ ପିତା ପିତାମହ ଆଦି ଚଉଦ ପୁରୁଷଙ୍କ ଆତ୍ମା ଯେ ରୌରବ ନର୍କରେ ପଡ଼ି ଛଟପଟ ହେବ ।

ବସ୍ତୁତ ଭାବିଚିନ୍ତି କେବଳ କୁଳଧର୍ମ ରକ୍ଷାର୍ଥେ ଆଉ ଶାସ୍ତ୍ର-ବଚନ ପାଳନାର୍ଥେ ପଞ୍ଚମ ଥର ପାଇଁ ବିବାହ କରିବାକୁ ପଣ୍ଡିତ ମହାଶୟ ସଂକଳ୍ପ ଦୃଢ଼ କଲେ । ଆଗରୁ କନ୍ୟାସୁନା ଓ କନ୍ୟାଙ୍କ ଦେହର ସୁନାରେ ଜମିବାଡ଼ି ଯାହା ଥିଲା, ସବୁ ବିକି ହୋଇ ସାରିଥିଲା । ବର୍ତ୍ତମାନ ଅନ୍ୟ କିଛି ଉପାୟ ନ ପାଇ ପଣ୍ଡିତେ ନିଜର ଘରଡ଼ିହ ଖଣ୍ଡି ବନ୍ଧାପକାଇ ଦେଡ଼ଶହଟି ଟଙ୍କା ଗଣ୍ଠି କରି କନ୍ୟା ଆଣିବାକୁ ବାହାରି ପଡ଼ିଲେ । ତାଙ୍କର ଆଉ କିଏ ଅଛି ଯେ, ତାଙ୍କ ପାଇଁ କନ୍ୟା ଖୋଜି ଆଣିବ । ଗାଁ ବାଲା ତ ପରର ଶିରି ସୁଦ୍ଧା ଦେଖିପାରନ୍ତି ନାହିଁ । ତାଙ୍କପାଇଁ କନ୍ୟା ଖୋଜାଖୋଜି

କରିବା ଦୂରେ ଥାଉ, ତାଙ୍କ ବଣ୍ଡ ହେବା କଥା ଶୁଣି ଥଣ୍ଡା ଟାପରା କରିବାକୁ, ପଛେ ଅଧେ ଯୁାକୁ ତାକୁ ଗଛପଡ଼ରକୁ ଦେଖାଇ ଗାଳିମନ୍ଦ ଦେବାକୁ ଛାଡ଼ୁ ନାହାନ୍ତି । ଅନନ୍ୟୋପାୟ ହୋଇ ପଣ୍ଡିତେ ସ୍ୱୟଂ କନ୍ୟା ଖୋଜି ବାହାରିଲେ ।

ଧାର୍ମିକକୁ ଧର୍ମ ଯୁଗେ ଯୁଗେ ସାହା । ପଣ୍ଡିତ ମହାଶୟଙ୍କୁ ଆଉ ବେଶୀ ପରିଶ୍ରମ କରିବାକୁ ପଡ଼ିଲା ନାହିଁ । ଆଉ ଗାଁର ସନ୍ଧୁ ପାତ୍ରୀ ପଣ୍ଡିତ ମହାଶୟଙ୍କ ବିକଳ ସହି ନ ପାରି ଦୟା କରି ନିଜର କୋଡ଼ପୋଛା କନ୍ୟା କମଳାକୁ କେବଳ ଦେଡ଼ଶହଟି ମାତ୍ର ଟଙ୍କା ନେଇ ଗୌରୀଦାନ କରିଦେଲେ । ବୁଢ଼ା ବର ବୋଲି କିଏ କହିଲେ, ପାତ୍ରୀଏ ଉତ୍ତର ଦିଅନ୍ତି, "ଆରେ ଯାଆ ହୋ, ପୁରୁଷର ବୁଢ଼ା କଅଣ, ହଡ଼ା କଅଣ ? ତାଙ୍କ ଭଳିଆ ପଣ୍ଡିତଙ୍କୁ ଜୁଆଇଁ କରି କେତେ ଜଣ ପାଇଥାନ୍ତି ? ତୁମେ ଗୁଡ଼ାକ ମୋର ଭାଗ୍ୟ ସହିପାରୁ ନାହିଁ । ମୁଁ ଇଚ୍ଛା କରିଥିଲେ, ମୋ କମଳ ପାଇଁ ତିନିଶହ ଟଙ୍କା ଦାବି କରିପାରିଥାନ୍ତି—କେବଳ ବ୍ରାହ୍ମଣ ପଣ୍ଡିତ, ଧାର୍ମିକ ଲୋକ, ଶାସ୍ତ୍ରଜ୍ଞ; ତେଣୁ ସେମିତି ଦାନ କରିଦେଲି । କଅଣ କରିବି ? ମୁଁ ତ କାହାରି ବିକଳ ସହିପାରେ ନାହିଁ—ତାଙ୍କ ବିକଳ ବା ସହନ୍ତି କେତେକେ ?"

ସାହାହେଉ ଚାଳିଶି ବର୍ଷ ବୟସର ପାତ୍ରୀଏ ଶ୍ୱଶୁର ହୋଇ ଅଠଚାଳିଶ ବର୍ଷର ଜୁଆଇଁ ପଣ୍ଡିତଙ୍କୁ କନ୍ୟାଦାନ କରି ଯେପରି ସୁଖୀ ହେଲେ, ପଣ୍ଡିତେ ଶ୍ୱଶୁରଙ୍କ କନ୍ୟା ଓ ଶ୍ରୀଚରଣ ଧୂଳି ସହ 'ଧନ-ଜନ-ଗୋପ-ଲକ୍ଷ୍ମୀ' ଇତ୍ୟାଦି ଆଶୀର୍ବାଦ ବଚନ ପାଇଁ ସେତିକି ଖୁସି ହେଲେ । ଖୁସି ହେଲେ ନାହିଁ କେବଳ ଟୋଉ

ଯେଉଁ ହଂସାଳିଆ ଖରାପ ସ୍ୱଭାବର ଲୋକଗୁଡ଼ାକ । ଘୋର କଳିକାଳ ତ—ସେମାନେ ଶାସ୍ତ୍ର ମାନନ୍ତି କପରି ?

+ + +

ଯଶୋଦାକୁ ଆଣିଲାବେଳେ ପଣ୍ଡିତ ମହାଶୟଙ୍କ ପିତୃଅର୍ଜିତ ବାତଜର ପଣ୍ଡିତଙ୍କ ଆଶ୍ରୟ ନେଇଥିଲା—ତା ଫଳରେ ବାମ ପାଦଟି ସ୍ୱାଭାବିକ ଆକାର ଛାଡ଼ି ସ୍ଥୂଳ ହୋଇ ପଡ଼ିଥିଲା । ମଝିରେ ମଝିରେ ଜର ହୋଇ ତାଙ୍କୁ ଗୁରି ପାଞ୍ଚ ଦିନ ଶଯ୍ୟାଶାୟୀ ମଧ୍ୟ କରି ପକାଉଥିଲା । ଏଥର କମଳା ସାଙ୍ଗେ ସାଙ୍ଗେ ଧଇଁଶ୍ୱାସ ପଣ୍ଡିତଙ୍କର ଚିରସହଚର ହୋଇ ରହିଲା ।

ପଣ୍ଡିତଙ୍କ ଘର ପୁଣି ହସିଉଠିଲା । ସ୍ୱୟଂ ପଣ୍ଡିତେ, ତାଙ୍କ ଧର୍ମପୁଅ ମଦନସୁନ୍ଦର ଆଉ ତାଙ୍କ ବାଳିକା ସ୍ତ୍ରୀ କମଳା—ଏ ତିନିଜଣଯାକ ମିଶି ଘରକୁ ବୈକୁଣ୍ଠ ସମାନ କରି ଦେଇଥିଲେ ।

ପ୍ରତିଦିନ ଆୟ ଖରଚ ଉଠାଇବା ଲାଗି ପଣ୍ଡିତେ ଦାଣ୍ଡଘରେ ଆଜିକାଲି ଗୋଟିଏ ଟୋଲ୍ ଫିଟାଇଅଛନ୍ତି । ଗାଁର ଗୁରି ପାଞ୍ଚ ଜଣ ବ୍ରାହ୍ମଣ ପିଲା ସେଠାରେ ବସି କେହି ଅମରକୋଷ; କେହି କର୍ମକର୍ମାଣି, କେହିବା ସନ୍ଧ୍ୟା ଗାୟତ୍ରୀ ମୁଖସ୍ଥ କରନ୍ତି ।

ଏହା ଭିତରେ ଗୁହୁଁ ଗୁହୁଁ ସାତୁଟା ବର୍ଷ ଯେ କପରି କଟିଗଲା, ତା ଜଣାପଡ଼ିଲା ନାହିଁ । ବର୍ତ୍ତମାନ କମଳା ପୂର୍ଣ୍ଣ-ଯୌବନା । ପଣ୍ଡିତେ କମଳାର ପ୍ରେମସାଗରରେ ଏକାବେଳକେ

ହାବୁଡ଼ୁବୁ ଖାଉଅଛନ୍ତି । କମଳାର ପତିଭକ୍ତି ମଧ୍ୟ ଅନନ୍ୟ-ସାଧାରଣ । ଅଳଙ୍କାର ଆଦାୟ କଲାବେଳେ କରକମଳରେ ପଦସେବାଠାରୁ ଆରମ୍ଭ କରି, ମନକାମନା ପୂର୍ଣ୍ଣ ନ ହେଲେ ସମାର୍ଜନୀ-ସଞ୍ଚାଳନଦ୍ୱାରା ପୃଷ୍ଠସେବା ଯାଏ କିଛି ତାଙ୍କୁ ଅମାଲୁମ ନାହିଁ । ତାଙ୍କୁ ପାଇ ପଣ୍ଡିତ ମହାଶୟ ନିଜକୁ ବଡ଼ ଗୌରବାନ୍ୱିତ ମନେ କରନ୍ତି । ଆଜି ମଧ୍ୟ ଭାବନ୍ତି, ସାରା ସଂସାର ଯେପରି ତାଙ୍କର ଏସୁଖ ସହିପାରୁ ନାହିଁ । କମଳା ସୁନ୍ଦରୀ—ଖୁବ୍ ସୁନ୍ଦରୀ । ସମସ୍ତେ ଯେପରି ତା ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ—ତା ପ୍ରତି ଲୋଲୁପ ଦୃଷ୍ଟି ପକାଉଅଛନ୍ତି ।

ଥରେ ସନ୍ଧ୍ୟାବେଳେ ପଣ୍ଡିତେ ନିଜ ପିଣ୍ଡାରେ ବସି ଟିକିଏ ଆପୁ ଖାଉଅଛନ୍ତି । ଏହି ସମୟରେ ପଡ଼ଶା ଘରୁ ସ୍କୁଲରେ ପଢୁଥିବା ଗ୍ଲେଟ ପିଲାଟି ତା ପଢ଼ା ମୁଖସ୍ତ କରୁ କରୁ ଗାଇ ଉଠିଲା—"କମଳେ କମଳା ସମ ଉଦାର···।" ପଣ୍ଡିତେ ଚମକି ପଡ଼ିଲେ । ଆରେ ବାପ୍‌ରେ, ଗୁରିଆଡ଼େ ଏଇ କମଳା ! ଏ ଛୁଆଗୁଡ଼ାଙ୍କ ଆଖି ଫୁଟିଯାଉ ନାହିଁ ? ଆଚ୍ଛା, ଆଜିକି ଗଲା—ଆଉ ଦିନେ ଯଦି ତା ପାଟିରୁ ଶୁଣେ, ତାଙ୍କୁ ଠିକ୍ କରିଦେବି ।

ଆଉ ଗୋଟିଏ ଦିନ; ପଣ୍ଡିତେ ଗାଧୋଇ ଆସି ନିତ୍ୟକର୍ମ ପୂଜା ସେବା ସାରି ଖାଇ ବସିଛନ୍ତି; କମଳା ଆସି ପରଶି ଦେଇ ଯାଉଛି; ଦାଣ୍ଡରେ ଗୋଟାଏ ଯୋଗୀ ଆସି ବଡ଼ ପାଟିରେ ଗୀତ ଆରମ୍ଭ କରିଦେଲା—ଚଣ୍ଡାଳୁଣୀ ସେବା କଲା କମଳା ଚରଣ···।

ପଣ୍ଡିତ ମହାଶୟ ଆଉ ଖାଇବେ କଅଣ ? ଧଡ଼ପଡ଼ ହୋଇ ଉଠିଆସି ହାତବାଡ଼ିଟା ଧରି ଦୁଆରମୁହଁକୁ ଦଉଡ଼ ଯାଉ ଯାଉ

କହିଉଠିଲେ—"ଚଣ୍ଡାଳୁଣୀ ସେବା କଲ ତୋ ବୋପା ମୁଣ୍ଡ । ଶଳାର ପୁଅ ଶଳା ପାଜି , ଏଠୁ ଯାଉଛୁ ନା ତୋ ମୁଣ୍ଡ ଆଜି ଥାଳ ଏ ବେଙ୍ଗାରେ ଚୂନା କରିଦେବ ।"

ଯୋଗୀ ବିଚରା ପଣ୍ଡିତଙ୍କ ରୁଦ୍ର ମୂର୍ତ୍ତି ଦେଖି କିଚ୍ଛିବୁଝି ନ ପାରି ମୁଣ୍ଡ କୋଳରେ ନୁହେଁ, ଥାଳ କୋଳରେ ସେଠାରୁ ଛୁ ।

ପଣ୍ଡିତେ ଭାବିଲେ, ଦେଖ ତ ଦେଖି ଏ କାଳର ଯାତ୍ରକୁ । ମୁଁ ମୋର ଘର ସଂସାର କରି ସୁଖରେ ଅଛି—ଆଉ କାହାରବା ଘର ସଂସାର ନାହିଁ ? କେବଳ ମୋରି ଘର ଉପରେ ସମସ୍ତଙ୍କ ଦୃଷ୍ଟି !

ସେ ବିରକ୍ତ ହୋଇ ଯାଇ ଦାଣ୍ଡଘରେ, ଯେଉଁଠାରେ ପିଲାଏ ପଢ଼ୁଥିଲେ ସେଠାରେ ପହଞ୍ଚିଗଲେ । ପିଲାମାନେ ଆଗରୁ ଫିସିଗପରେ ଲାଗିଥିଲେ । ପଣ୍ଡିତେ ରାଗରେ ତମତମ ହୋଇ ଆସୁଥିବାର ଦେଖି ସମସ୍ତେ ହୋ ହା କରି ନିଜ ନିଜ ପଢ଼ା ଆରମ୍ଭ କରିଦେଲେ । ଅମରକୋଷ ଘୋଷୁଥିବା ପିଲାଟି ଚିଡ଼ି-ଉଠିଲା, "ଲକ୍ଷ୍ମୀ ପଦ୍ମାଳୟା ପଦ୍ମା କମଳା ଶ୍ରୀ..."

ଆଉ ଯାଏ କୁଆଡ଼େ ? ପଣ୍ଡିତ ମହାଶୟଙ୍କ ଡାହାଣ ହାତର ଚଟକଣାଟା ଖୁବ୍ ଜୋରରେ ତା ବାଁ ଗାଲରେ ବସିଗଲା—ତା ମୁଣ୍ଡ ଘୂରିଗଲା । ପଣ୍ଡିତେ ରାଗରେ ଜଳିଉଠି ଯାହା ମନକୁ ଆସିଲା ତା ବକି ସେଠାରୁ ଚାଲିଗଲେ ।

ପର ଦିନଠାରୁ ସେ ଚୋଲଟିକୁ ଆଉ ପିଲା ଆସିଲେ ନାହିଁ । ପଣ୍ଡିତଙ୍କର ମାସକୁ ଯାହା ଟଙ୍କାଏ ଦେଢ଼ଟଙ୍କା ରୋଜଗାର ହୋଇ ଆପୁ ନଶାରେ ଲାଗୁଥିଲା, ତା ବନ୍ଦ ହୋଇଗଲା ।

× × × ×

ମଦନ ବର୍ତ୍ତମାନ ଆଉ ପିଲା ନୁହେଁ—ଛବିଶ ବର୍ଷର ଯୁବକ, ଷୋଡ଼ଶୀ ମାତାର ଖୁବ୍ ଆଦରର ଧନ । ଯେତେ ପର ହେଲେ

ସୁଦ୍ଧା ପୁଅ ତ । କେଉଁ ମା ବା ପୁଅକୁ ପର  କରିଦେଇପାରେ ? ଭଲ ଖାଇବା ଜିନିଷଟିଏ ଆସିଲେ କମଳା ଆଗ ମଦନ ପାଇଁ ସାଇତି ରଖେ; ମଦନର ଘରଟିକୁ ଖୁବ୍ ଯତ୍ନରେ ସଜାଇ ଝଡ଼ା ଝଡ଼ି କରି ଦେଇଥାଏ । ଦିନର ଅଧେ ସମୟ ତା ସହିତ ଖୁସି ଗପ, ଆମୋଦ ପ୍ରମୋଦ—ଦରକାର ବେଳେ ତା ସେବାରେ କଟାଏ ! ପ୍ରଥମେ ପ୍ରଥମେ ଏକଥା ପଣ୍ଡିତ ମହାଶୟଙ୍କୁ ଟିକିଏ ଅଡ଼ୁଆ ଲାଗୁଥିଲା;କିନ୍ତୁ ଏଣିକି ଦେହସହା ହୋଇଗଲାଣି । ସେ ଜାଣି ପାରିଲେଣି, ତାଙ୍କର ଶ୍ୱାସର ଆଧିକ୍ୟ ଯେତେ ବଢ଼ୁଛି, ବାତଜର ଯେତେ ବେଶୀ ହେଉଛି, କମଳାର ବାତ୍ସଲ୍ୟମମତା ସେତେ ଅଧିକ ଉଜ୍ଜ୍ୱଳ ପଡ଼ୁଛି ।

ଥରେ ପଣ୍ଡିତେ ତିନି ଚାରି ଦିନ ପାଇଁ ଏକାବେଳକେ ବିଛଣା ଧଇଲେ । ସେତେବେଳେ ଦେଖିଲେ ଯେ,ତାଙ୍କ ସେବା ତ କରିବା ଦୂରର କଥା,ତାଙ୍କୁ ଶୋଷବେଳେ ଟୋପାଏ ପାଣି ଦେବା, ସନ୍ଧ୍ୟାବେଳେ ଆସୁ ଉଠାଇ ପାଖକୁ ବଢ଼ାଇଦେବା ବା ଭୋକବେଳେ ପଥ୍ୟ ଦେବାକୁ ସୁଦ୍ଧା କେହି ମିଳନ୍ତି ନାହିଁ । ଆଉ ଘରେ କମଳା ମଦନଙ୍କ ହସର ଜୋରରେ ପଣ୍ଡିତଙ୍କ ଆତୁର ଡାକ କୁଆଡ଼େ ମିଳାଇଯାଏ ।

ଜ୍ୱରରେ ପଡ଼ି ଆକୁଳରେ ପାଟି କରି କରି ପଣ୍ଡିତଙ୍କୁ ବଡ଼ ଶୋଷ ହେଲା । ସେ ପାଣି ପାଇଁ ଡାକ ଡାକ ଅଥୟ ହୋଇଗଲେ, କେହି ଶୁଣିଲେ ନାହିଁ । ସେ ବହୁ କଷ୍ଟରେ ଉଠି ଧୀରେ ଧୀରେ ଖୋଷାଇଘର ଦୁଆରମୁହଁକୁ ଗଲେ । ଦେଖିଲେ, ସେଠାରେ କମଳା ନାହିଁ କି ପିଇବା ପାଣି ଟୋପାଏ ସୁଦ୍ଧା ନାହିଁ । ବଡ଼ ବ୍ୟସ୍ତ ହୋଇ ତହୁଁ ପଣ୍ଡିତେ ମଦନ ଘରକୁ ଯାଇ କବାଟରେ ଧକ୍କା ଦେଲେ । ଆଉ ଯାଆନ୍ତି କୁଆଡ଼େ ? ଧଡ଼ାସ୍ କରି କବାଟ ଫିଟାଇ

ଦେଇ ମଦନ ଗର୍ଜିଉଠିଲେ, "ଯୁଃ, ଏ ଖେଣ୍ଟାଟା ଆଉ ମଣିଷକୁ ଥଇଁ କରିଦେବ ନାହିଁ। ମରଣ ହେଉ ନାହିଁ ?"

କମଳା ମଦନର ପଛ ଆଡ଼ୁ ଆଗକୁ ଗୁଞ୍ଜିଆସି ହାତ ହଲାଇ କହିପକାଇଲା—"ଆହା ସୁଆଗୀ ଗେରସ୍ତ ! ଏତେ ଖାକୁଳ ହେଉଛ କାହିଁକି କି ? ପୁଅଟା ଦେହ ଟିକିଏ ବ୍ୟସ୍ତ ଥିଲା ବୋଲି ତା ଗୋଡ଼ରେ ହାତ ବୁଲାଇ ଦେଉଥିଲି—ଏଇ ଟିକିକ ସମୟରେ ଏତେ ଜଞ୍ଜାଳ ?"

ମନ୍ତ୍ରିତଙ୍କ ମୂଣ୍ଡ ଘୂରିଗଲା—ଅବଶ୍ୟ ଏ ଗର୍ଜନ ତର୍ଜନ ଯୋଗୁ ନୁହେ—ତାଙ୍କର କୌଣସି ମାନସିକ ବିକାର ଯୋଗୁ । ସେ ସେଠାରେ ଲଥ୍‌କିନା ବସିପଡ଼ିଲେ ।

× × × ×

ପଣ୍ଡିତ ମହାଶୟ ଏଥରକ ଭଲ ହୋଇଯିବାକ୍ଷଣି ନିଜର ଲୁଗାପଟା ବିଛଣା ପୁଟୁଳା ବାନ୍ଧି ତୀର୍ଥଯାତ୍ରା କରିବାକୁ ବାହାରି ପଡ଼ିଲେ । କିଏ ପଚାରିଲେ କହନ୍ତି—"ହଁ, ତିନି କାଳ ତ ଗଲା । ସଂସାରରେ ଯାହା କରିବାର, ସ୍ତ୍ରୀ ପୁତ୍ର—ତା ତ କରିଗଲି । ଏବେ ଚତୁର୍ଥ କାଳରେ ତୀର୍ଥରେ ଟିକିଏ ଧର୍ମ କର୍ମ ନ କଲେ ବ୍ରାହ୍ମଣ-ଜନ୍ମ ସାର୍ଥକ ହେବଟିକି ?"

ସେ ଚଳିଗଲା ପରେ ଟୋକାଟା ସେଦିନ କଥା କହୁ କହୁ କହିପକାଇଲା, "ଆହେ, ପଣ୍ଡିତେ ଶାସ୍ତ୍ରତତ୍ତ୍ୱବିଦ୍ କି ନା—ଶାସ୍ତ୍ର ଅକ୍ଷରେ ଅକ୍ଷରେ ପାଳି ଚଳନ୍ତି । ବର୍ତ୍ତମାନ ତୀର୍ଥ ନ କରି ଆଉ କରନ୍ତେ କଅଣ ? ଶାସ୍ତ୍ରରେ ଅଛି ପରା—

ପତ୍ନୀ ନିନ୍ଦେଣି ପୁତ୍ର ପାଶେ,
ଅଥବା ଚଳିବ ସନ୍ନ୍ୟାସେ ।

ମାତ୍ର ଏ 'ଅଥବା' ଅର୍ଥଟା କଅଣ, ତା ଅବୁଝା ରହିଗଲା ।"

———

## ହାମ୍ ବଜାର କା ଚେଜ

କଟକ ସହରର ଖଲିଫା ବଜାର ଆଉ ଫିରଙ୍ଗି ବଜାର । ଏ ଦୁଇ ବଜାର ଭିତରେ ଗଲା ତିନ ବର୍ଷ ହେଲା ଯେ ମହାଯୁଦ୍ଧ ଲାଗିରହିଛି—ଏ କଥା କିଏ ନ ଜାଣେ ? ଖଲିଫା ବଜାରର ଲୋକଙ୍କ ଛୁଇ ପଡ଼ିଲେ ଫିରଙ୍ଗି ବଜାର ଲୋକଙ୍କ ନାକ ଚମକେ; ଫିରଙ୍ଗି ବଜାର ଲୋକଙ୍କ ପାଟି ଶୁଣିଲେ ଖଲିଫା ବଜାର ଲୋକଙ୍କ ମାଟି କମ୍ପି ଉଠେ । ମଣିଷ କଥା ତ ଦୂର, ଏ ବଜାର ଚଢ଼େଇଟା ସେ ବଜାର ଉପରେ ଉଡ଼ି ଯାଇପାରିବ ନାହିଁ କି ସେ ବଜାରର ବିଲେଇ ଛୁଆଟା ଏ ବଜାର ଭିତରକୁ ପଶିଯାଇବାର ଯୁ ନାହିଁ ।

ଖଲିଫା ବଜାରର ନେତା ଆହ୍ଲୁନ୍ ମିଆ ନିଜ ବଜାରବାଲାଙ୍କୁ କଡ଼ା ହୁକୁମ ଶୁଣାଇ ଦେଇ ଅଛନ୍ତି । ତାର ମର୍ମ, ସାବଧାନ, ସେ ବଜାର ଧୂଳି ଯେପରି ଏ ବଜାରକୁ ନ ଆସେ । ଫିରଙ୍ଗି ବଜାରର ପହିଲମାନ୍ ଗୁଟିଆ ବାହା ପିଟି ଆଦେଶ କରି କହିଅଛନ୍ତି—ଦେଖି ଲେଙ୍ଗେ, ଖଲିଫା ବଜାରକୋ ମଟିମେ ମିଲାଦେଙ୍ଗେ ।

ଏ ତିନି ବର୍ଷ ଭିତରେ ଦୁଇ ପକ୍ଷରୁ ପନ୍ଦରଟା ଫୌଜଦାରୀ ମକଦ୍ଦମା କଚେରୀରେ ଦାଏର ହୋଇଛି; ପଚିଶ ଥର ପୁଲିସ ଆସି ଶାନ୍ତି ରକ୍ଷିବା ପାଇଁ ମଧୁର ଲାଠି ଚଳାଇ ଅଶାନ୍ତି ବଢ଼ାଇଛନ୍ତି । ଦୁଇ ବଜାରରୁ ସତେଇଶ ଜଣ ମକଦ୍ଦମାରେ ପଡ଼ି ଜାମିନରେ ଅଛନ୍ତି, ସତର ଜଣ ବର୍ତ୍ତମାନ ହାଜତରେ, ସାତ ଜଣ ଫେରାର ହୋଇଅଛନ୍ତି । କିଏ ଘରଡ଼ିହ ବିକି, କିଏ ନିଜ ଦୋକାନପତ୍ର ଭାଙ୍ଗି, କିଏ ବ୍ୟାଙ୍କରୁ କରଜ ଆଣି ହଜାର ହଜାର

ଟଙ୍କା ମକଦ୍ଦମା ଖର୍ଚ୍ଚ ଯୋଗାଇଛନ୍ତି, ତଥାପି ମକଦ୍ଦମା ଛିଡ଼ୁ ନାହିଁ କି କାହାର ଉପରୁ କାହାର ଅହନ୍ତା ଯାଉ ନାହିଁ ।

ଫିରଙ୍ଗି ବଜାରବାଲା ଆସି ଖଲଫା ବଜାରରେ ତିନି ଥର ଘର ପୋଡ଼ିଦେଇ ଗଲେଣି; ଖଲଫା ବଜାରବାଲା ଯାଇ ଫିରଙ୍ଗି ବଜାର ଲୋକଙ୍କ ତାଙ୍କୁ ଚାରି ଥର ପିଟିଦେଇ ଆସିଲେଣି । ପ୍ରତିଦିନ ରାତିରେ ଦୁଇ ବଜାରର ଘରକୁ ବରାବର ଢେଲା ପଥର ପଡ଼ୁଛି । କେତେ ପୁଲିସ ପହରା, ସାଇବାଲା ଛକା ପଞ୍ଝାରେ— ତଥାପି ଫଳ କିଛି ହେଉ ନାହିଁ ।

ଗଲା ବର୍ଷ ତ ଦିନ ଦି'ପହରେ ଖଣ୍ଡଯୁଦ୍ଧ ଲାଗିଗଲା । ଫିରଙ୍ଗି ବଜାରବାଲା ଠେଙ୍ଗା ବାଡ଼ି, ଦୋକାନର ଚାଟିବାଉଁଶ, ଗାଡ଼ି ଅଖ ଧରି 'ହାମ୍ ବଜାର କି ଜୟ' କରି ବାହାରି ପଡ଼ିଲେ— ଆଜି ନିଶ୍ଚୟ ସେମାନେ ଖଲଫା ବଜାରକୁ ଦଖଲ କରିବେ; ତାଙ୍କର ଏତେ ଦେମାକ୍, ତାଙ୍କ ବଜାରର କୁଣ୍ଡ ଆସି ଆମ ବଜାରରେ ଗୋଳମାଳ କରିବ ! ଏ ଦେମାକ୍ ଭାଙ୍ଗିବାକୁ ହେବ ।

କଥା କଣ କି ? ଦିନେ ଦେଖାଗଲା, ଗୋଟାଏ ରୋଗୀଣା ଜୁମଉଠା କୁଣ୍ଡ ଫିରଙ୍ଗି ବଜାରରେ ବୁଲୁଅଛି । ଖାଲି ବୁଲିବାରେ କଥା ନ ଥିଲା । ବାସୁଆମାଆର ଖଣ୍ଡିଆ ଚାଟି ଘର ଭିତରେ ପଶି ତା ହାଣ୍ଡିକୁଣ୍ଡେଇ ମାରି କରିଅଛି । ବାସୁଆମା ଏ କଥା ସାଇର ପଞ୍ଚପରମେଶ୍ୱରଙ୍କ ପାଖରେ ଗୁହାରି କଲା, ଆଉ ମଧ ଧବଳେଶ୍ୱରଙ୍କ ଦୋହି ଦେଇ କହିଲା ଯେ, ଏ କୁଣ୍ଡଟା ଖଲଫା ବଜାରର ।

ସେଇଠୁ ବଜାରର ମାମଲତକାର ଉକା ହେଲେ । ଦେବୀ-ଘରେ ସଭା ବସିଲା, ବହୁ ଯୁକ୍ତିତର୍କ ହେଲା, ଆଲୋଚନା ଚାଲିଲା ।

ଆଜକାଲି ଯୁଦ୍ଧରେ ଶତ୍ରୁ ପକ୍ଷରୁ ଭିତର ଖବର ନେବା ପାଇଁ ଚାରଙ୍କୁ ପଠାଯାଉଛି, ମାଙ୍କଡ଼ବାହିନୀ ଗଢ଼ାଯାଇ ଶତ୍ରୁଙ୍କୁ କାବୁ କରାଯାଉଛି । ଖଲିଫା ବଜାରବାଲା ସେମିତି କିଛି ଫିକର ଫାନ୍ଦିଅଛନ୍ତି; ଆମକୁ ଜବତ୍ କରିବା ପାଇଁ ଏ କୁଷ୍ଣଟାକୁ ପଠାଇଅଛନ୍ତି । ନା, ତାର ପ୍ରତିଶୋଧ ଦରକାର; ଆଜ, ବର୍ତ୍ତମାନ ।

ସାଙ୍ଗେ ସାଙ୍ଗେ ଯୁଦ୍ଧ ଡାକରା ପଡ଼ିଗଲା । ପିଲାଠାରୁ ବୁଢ଼ା ଯାଏ ହିନ୍ଦୁ ମୁସଲମାନ, ବ୍ରାହ୍ମଣ ପାଣ ସମସ୍ତେ ବାହାରିପଡ଼ିଲେ । ନଜର କାମଦାମ, ଦୋକାନପତ୍ର ସବୁ ବନ୍ଦ; ଆଗ ମାନ, ଆଗ ମର୍ଯ୍ୟାଦା—ଏସବୁ ତ କେବଳ ସେଇଥିପାଇଁ ।

ପ୍ରଥମେ ଗଳି କନ୍ଧ ଖୋଜି କୁଷ୍ଣଟାକୁ ଧରି ଅଣାଗଲା । ମୁହୂର୍ତ୍ତକ ମଧ୍ୟରେ ତା ହାଡ଼ ମାଂସ ଟିକିଟିକି କରି ସମସ୍ତଙ୍କ ମଧ୍ୟରେ ବାଣ୍ଟି ଦିଆହେଲା, ତା ରକ୍ତ ସମସ୍ତେ ମୁଣ୍ଡରେ ଚିତା ଦେଲେ । ତା ପରେ ପାଟିଗୋଳ କରି ଏକମେଲରେ ବାହାରିଲେ ଗଡ଼ ଜିଣି —ଖଲିଫା ବଜାରକୁ ଧ୍ୱଂସ କରିବାକୁ ହେବ, ସେ ବଜାରର ଲୋକଙ୍କୁ ଠିକ୍ କରିବାକୁ ହେବ; 'ଇନ୍‌କଲାବ୍ ଜିନ୍ଦାବାଦ' ।

ଏଣେ ଖଲିଫା ବଜାରରେ ହଇଚଇ କାଣ୍ଡ । ତାଙ୍କ ବଜାରର କୁଷ୍ଣଟାକୁ ଫିରିଙ୍ଗି ବଜାର ଲୋକେ ଧରିନେଇଅଛନ୍ତି । ଏତେ ସାବଧାନ, ଏତେ କଡ଼ା ପହରା—ତଥାପି ସେମାନେ ଏ ବଜାରର କୁଷ୍ଣଟାକୁ ନେଇଗଲେ ! କୁଷ୍ଣ ନୁହେ ତ, ଏ ବଜାରର ଲକ୍ଷ୍ମୀ ନେଇଗଲେ । ଆଜ କୁଷ୍ଣ ନେଇଗଲେ, କାଲି ଆଉ କଅଣ ନ ନେବେ ? ମା ଭଉଣୀ, ପିଲା କବିଲା ଧରି ଆମେ ଘର କରୁଛୁ, ସେମାନଙ୍କୁ ନେଇଯିବା କେତେ ଦୂର ? ନା, ଏଥର ପ୍ରତିଶୋଧ ନେବାକୁ ହେବ , ପ୍ରତିକାର କରିବାକୁ ହେବ ।

ବଜାରର ଟୋକା ଭେଣ୍ଡିଆ ବୁଢ଼ା—ଏପରି କି ମାସ ମାସ ଧରି ଘରେ ବେମାରରେ ପଡ଼ିଥିଲେ ଯେଉଁ ମାନେ, ସେମାନେ ମଧ୍ୟ ମାର୍-ମାର୍-ଧର୍-ଧର୍- ପାଟି କରି ବାହାରିପଡ଼ିଲେ । ରସ୍ତା ମରାମତି ପାଇଁ ଗଦା ହୋଇଥିବା ଗେଙ୍ଗୁଟି ପଥରରୁ ପୂଳାଏ ପୂଳାଏ କାନିରେ ଧଇଲେ । ନିଜର ଇଜ୍ଜତ ଠିକ ରଖିବାକୁ ହେବ; 'ହାମ୍ ବଜାର କି ଜେ' ।

ଉଦୁଉଦିଆ ଦି ପହରି, ଦୁଇ ବଜାର ମଝିରେ ଲାଗିଗଲା ଧୁମ୍‌ମୂଳ ଯୁଦ୍ଧ । ସେ ପଟରୁ ଠେଙ୍ଗା ଚାଲିଲା ତ, ଏ ପଟରୁ ଢେଲା ପଥର ବୃଷ୍ଟି ହେଲା । କାହା ମୁଣ୍ଡ ଫାଟିଲା, କାହା ଆଖି ଫୁଟିଲା । କାହା ଦାନ୍ତ ଭାଙ୍ଗିଲା, କାହାର ବା ଗୋଡ଼ ଛେଚା ହେଲା ।

ଏ ବଜାରର ମାମୁ ସେ ବଜାରର ଭଣଜା ତାଳୁ ଫଟାଇଲା, ସେ ବଜାରର ଶଶୁର ଏ ବଜାରର ଜୁଆଇଁ ପିଠିରେ ଠେଙ୍ଗା ବସାଇଲା । ମଉସା ପୁତୁରା, ଶଳା ଭଣୋଇ—ଏମିତି କେତେ ବନ୍ଧୁ ବାନ୍ଧବ ନିଜ ଭିତରେ ବାଡ଼ିଆପିଟା ହେଲେ । ଯେତେ ବନ୍ଧୁ ହୁଅନ୍ତୁ, ବଜାରର ମାନ ତ ରଖିବାକୁ ହେବ ।

ଘଣ୍ଟାକ ପରେ ପୁଲିସ ଖବର ପାଇ ଆସି ଘଟଣାସ୍ଥଳରେ ପହଞ୍ଚିଗଲେ । ନାଲିପଗଡ଼ିଆଙ୍କୁ ଦେଖି ସମସ୍ତଙ୍କର ସବୁ ବୀରତ୍ୱ ପାଣି ଫାଟିଗଲା । କିଏ କୁଆଡ଼େ ଛିନ୍ନଛତ୍ର ହୋଇ ପଳାଇଗଲେ, କେଣେ ଛତଣେ ଲୁଚିଲେ ।

ପରେ ପୁଲିସ ଘର ଘର ପଶି ଅନୁସନ୍ଧାନ କଲେ । ଏ ବଜାରରୁ ମୁଖିଆ ମୁଖିଆ ଆଠ ଜଣ, ସେ ବଜାରରୁ ମାମଲତକାର ନଅ ଜଣଙ୍କୁ ଗିରଫ କରିଗଲା । ଏ ବଜାରରୁ ଜଣେ ଯେ

ବଜାରରୁ ଜଣେ ଏମିତ ଯୋଡ଼ ଯୋଡ଼ କର ହାତକଡ଼ ଦେଇ ଝିଚ୍ ବଜାରରେ ଚଲାଇ ପୁଲିସ ସେମାନଙ୍କୁ ହାଜତକୁ ପଠାଇ-ଦେଲେ ।

—ଦୁଇ—

ଖଲଫା ବଜାରର ଗୁଣ ସାହୁଙ୍କ ଝିଅକୁ ବାହା ହୋଇଛନ୍ତି ଫିରଙ୍ଗି ବଜାରର ମଧୁ ସାହୁଙ୍କ ପୁଅ ସାଧୁ ସାହୁ । ବାହାଘର ଖୁବ୍ ଯାକଜମକରେ ବାଣ ଫୁଟାଇ ନଶାଣ ଉଡ଼ାଇ ହୋଇଗଲା । ବର କନ୍ୟାଙ୍କ କୋଷ୍ଠୀ ତନ ଥର ଦେଖାଯାଇଥିଲା—ରାଜଜୋଟକ । ଶୁଭମୁହୂର୍ତ୍ତ ଦେଖି ବର ଅନୁକୂଳ କଲା,ଅମୃତବେଳାରେ ବାଘର ହେଲା, ଯୋଗ୍ନ ପଞ୍ଚରେ ରଖି ବରକନ୍ୟା ବଦା ହେଲେ । ତଥାପି ଅମଙ୍ଗଳ ଯେ କେଉଁ ଛିଦ୍ର ଦେଇ କପର ପ୍ରବେଶ କଲା, ତା ଜଣାଗଲା ନାହିଁ ।

କନ୍ତୁ ଅମଙ୍ଗଳ ପ୍ରବେଶ କରଥିଲା । ବର୍ଷକ ପରେ ତାର କରାମତ ଜଣାପଡ଼ଲା । ମଧୁ ସାହୁ ଜାଣିଲେ, ସେ ଆଜଯାଏ ଯେଉଁ ବୋହୂକୁ ପ୍ରଶଂସା କର ଆସୁଥିଲେ, ସେ ବାସ୍ତବକ୍ ପ୍ରଶଂସାର ଯୋଗ୍ୟ ନୁହେ । ବୋହୂ ଅସୁନ୍ଦର, କଳହୁଡ଼ୀ, ହତଲକ୍ଷ୍ମୀ ।

ଗୁଣ ସାହୁ ବାହା ପୂର୍ବରୁ ପାଞ୍ଚ ଶହ ଟଙ୍କା ଦେବେ ବୋଲ ଜବାବ କରଥିଲେ, ଦେଲାବେଳକୁ ଦେଲେ ଦୁଇ ଶହ । ନୂଆ ସାଇକେଲ ଦେବେ ବୋଲ କହଥିଲେ, ଦେଲେ ପୁରୁଣା । ସୁନା ଘଡ଼ ଦେବା କଥା ହୋଇଥିଲା; କନ୍ତୁ ମିଳଲା ଗିଲଟିକର ଘଡ଼ ।

ଏଥିରେ ବୋହୂ ସୁନ୍ଦର ହେବ କପର ? କଳହୁଡ଼ୀ ନ ହେବ ବା କାହିଁକ ? ଲକ୍ଷ୍ମୀଛଡ଼ା ତ ନଶ୍ଚୟ !

ମଧ୍ୟ ସାହୁ ବରଷେଯାଏ ଚକାଇଲେ । ସେଇଠୁ ନିଜ ସାଙ୍ଗସୁଖ ବନ୍ଧୁ ବାନ୍ଧବଙ୍କ ଆଗରେ ଏ କଥା କହିଲେ । ଘରେ ବୋହୂକୁ ଛିଗୁଲେଇଲେ, ଗାଳିମନ୍ଦ କଲେ । ତାର ଗୃହଚଳଣ, ଖିଆପିଆ, କଥାବାର୍ତ୍ତା ସବୁଥିରେ ସବୁବେଳେ ବାଧିଲେ ।

ପ୍ରଥମେ ପ୍ରଥମେ ସାଧୁ ବାପାଙ୍କ କଥା ଶୁଣୁ ନ ଥିଲା । ପରେ ଯେତେବେଳେ ବାପାଙ୍କ କଥାକୁ କାନ ଦେଲା, ସେତେବେଳେ ସୁବର୍ଣ୍ଣ ସ୍ତ୍ରୀ କେମ୍ପୀ ପକ୍ଷର ହୋଇ କଳି କଲା । ବାପାଙ୍କୁ ମୁହେଁ ମୁହେଁ ଜବାବ ଦେଲା ।

ବାପା ଆଗ ଆଶ୍ଚର୍ଯ୍ୟ ହେଲେ, ପରେ ରାଗିଲେ । ଘରୁ ତଡ଼ିଦେବେ ବୋଲି ମଧ୍ୟ ଧମକାଇଲେ ।

କିନ୍ତୁ ଶେଷକୁ ତାଙ୍କୁ ଆଉ ବୁଝିବାକୁ ବାକି ରହିଲା ନାହିଁ ଯେ, ଏସବୁ ସେହି ଖଲିଫା ବଜାର ଝିଅ କେମ୍ପୀର କାରସାଦି । ଖଲିଫା ବଜାରବାଲା ଘର 'କୁହିମ' ଜାଣନ୍ତି; ମନ୍ତ୍ରଯନ୍ତ୍ର କରନ୍ତି । କେମ୍ପୀ କିଛି ମନ୍ତ୍ରଯନ୍ତ୍ର ବା କାଠପାଣି କରି ପୁଅକୁ ବଶ କରିଦେଲଣି । ନ ହେଲେ ତାର ପରି ପୁଅ ବାପକୁ ମୁହେଁ ମୁହେଁ ଜବାବ ଦିଅନ୍ତା ?

ଏହା କ୍ରମେ ବଜାରଯାକ ରାଷ୍ଟ୍ର ହୋଇଗଲା । ଫିରିଙ୍ଗି ବଜାରବାଲା ସମସ୍ତେ ଜାଣିଲେ—ଖଲିଫା ବଜାର ଲୋକେ ମନ୍ତ୍ର ଯନ୍ତ୍ର କରି ଆମ ବଜାରକୁ ନଷ୍ଟ କରିଦେବେ । ଆଜି ସାଧୁକୁ ଏପରି ବଶ କରିନେଲେ, କାଲି ଆଉ କାହାକୁ ଯେ ଅକ୍ତିଆର କରି ନ ନେବେ, ତା କିଏ କହିବ ?

ଖଲିଫା ବଜାର ଉପରେ ତାଙ୍କର ରାଗ ସେହି ଦିନୁ ଜୁହୁଳିବାକୁ ଲାଗିଲା ।

ସମସ୍ତଙ୍କର ବି ମନେ ମନେ ଭୟ ହୋଇଗଲା । ସେ ବଜାରର ଲୋକେ ମନ୍ତ୍ରତନ୍ତ୍ର ଜାଣନ୍ତି, ଗାରେଡ଼ି ଲଗାନ୍ତି । ମନ୍ତ୍ର ବଳରେ କାହାକୁ ହୁଏ ତ କୁକୁର କରିଦେବେ, କାହା ଦୋକାନ ଆଖି ପିଛୁଳାକେ ଉଡ଼ାଇଦେବେ; ଅସମ୍ଭବ କଅଣ ?

—ତିନି—

ସାଧୁର ମନ ଆଜି ଭଲ ନାହିଁ ।

ସକାଳୁ ଉଠୁ ଉଠୁ ବାପା ଦୁଇପଦ ଶୁଣାଇଦେଲେଣି । କେତେ ଆଉ ସେ ସହିବ ? କେତେ ସମ୍ଭାଳିବ ? ନିତି ବାପାଙ୍କ ସାଙ୍ଗରେ କଚରକଚର, ପ୍ରତିଦିନ ଯୁକ୍ତିତର୍କ ।

ମନ ଖରାପ କରି ସାଧୁ ସାଇକେଲ ଖଣ୍ଡିକ ଧରି ବାହାରି-ପଡ଼ିଲା, କୁଆଡ଼େ ଯାଇ ବୁଲିଆସିବ ଟିକିଏ । ଘରେ ରହିଲେ ସିନା ବାପା ଏଣୁତେଣୁ ଶୁଣାଇ ଗାଳି ଗୁଲଜ କରିବେ ।

ସାଇକେଲରେ ଯାଉ ଯାଉ ସାଧୁ ଭାବିଲା—"କେଉଁ ପାଇଁ ସେ ଆଉ କେତେ ଲଢ଼ିବ ? ବାପାଙ୍କ ସାଙ୍ଗରେ କେତେ କଳି କରିବ ? ନିତି ଘରେ ଅଶାନ୍ତି, ପାଟିତୁଣ୍ଡ । ଘରେ ରହି କିଛି ଲାଭ ନାହିଁ । ବାବାଜୀ ହୋଇ ଚାଲିଯିବା ଖୁବ୍ ଭଲ ।

"ବାବାଜୀ ହେବାଟା ଭାରି ସୁବିଧା । କିଛି ଚିନ୍ତା ନାହିଁ, ଦିକ ନାହିଁ । ରୋଜଗାର କରିବାକୁ ବି ପଡ଼ିବ ନାହିଁ । ସେଠାରେ

ବାପା ନ ଥିବେ ଗାଳି ଦେବାକୁ କି କେମ୍ପୀ ନ ଥିବ ଅଭିମାନରେ ମୁହଁ ଫୁଲାଇ ଦେବାପାଇଁ ।"

ସାଇକେଲ ପବନ ବେଗରେ ଚାଲିଛି; ତା ସଙ୍ଗେ ଠିକ୍ ତାଳ ରଖି ମନର ଭାବନା ମଧ୍ୟ ଗତି କରୁଛି ।

"ଚଣ୍ଡୀଖୋଲ ଠିକ୍ ଜାଗା । ସେଠି ରହିଲେ ବାପା ଜାଣିପାରିବେ ନାହିଁ । ଜାଣିଲେ ବି ସେଠାକୁ ଗଲେ ସେ ଦେଖା ଦେବ ନାହିଁକି ? ଦେଖାହେଲେ ବି ବାପା ତ ଚିହ୍ନି ପାରିବେ ନାହିଁ । ମୁହଁରେ ସେ ନିଶ ଦାଢ଼ି ଛାଡ଼ିଦେବ, ଗେରୁଆ ଲୁଗା ପିନ୍ଧିବ; ନା ନା କଉପୁନି ମାରି ଦେହରେ ଆଲଖାଲ୍ ଗଳାଇଦେବ । ମୁଣ୍ଡରେ ଠିଆ ଚୁଟା, ଦେହଯାକ ପାଉଁଶ ବୋଳା । ବାପା ତ ବାପା, ବାପାଙ୍କ ବାପା ବି ତା ହେଲେ ଚିହ୍ନି ପାରିବେ ନାହିଁ ।"

ଛକ ଜାଗା, ରାସ୍ତା କଡ଼ । ସାଇକେଲ ପୂର୍ବ ଦିଗ ଛାଡ଼ି ଉତ୍ତରକୁ ମୁହାଁଇଲା । ଭାବନାର ଗତି ମଧ୍ୟ ବଦଳିଗଲା ।

"ସତେ କଅଣ କେମ୍ପୀଟା ଖରାପ ? ନିଶ୍ଚୟ ଖରାପ ହୋଇଥିବ । ତା ଗାଲୁଟା ତ ଟିକିଏ ଉଚ୍ଚ ଦିଶେ; ସେ ଉଚ୍ଚକପାଳୀ, ହତଲକ୍ଷ୍ମୀ । ତା ନାକଟା ଚେପ୍ଟା, ଭଲ ତ ଜମା ଦିଶେ ନାହିଁ । ଆଖି ଦୁଇଟା ତ ଟିକିଏ କେମିତି ବଙ୍କା ବଙ୍କା । ନା, ସେ ସୁନ୍ଦରୀ ନୁହେ । ଛି, ଛି, ମୁଁ ମିଛରେ ଆଜଯାଏ ତା ପାଇଁ କଳ୍ପ କରିଆସିଛି, ବାପାଙ୍କର ଶତ୍ରୁ ହୋଇଅଛି ।"

"ବାପା ତ କହୁଛନ୍ତି, ଆଉ ଗୋଟାଏ ବାହା ଦେବେ ବୋଲି ।" ଖୁବ୍ ସୁନ୍ଦର ହୋଇଥିବ, ସୁଲକ୍ଷଣୀ; ସେ ଭଲ । ଏଇଟାକୁ ରଖି ମଣିଷ ଦହଗଞ୍ଜ ହୋଇଗଲାଣି ।"

ଭାବନାର ଖିଅ ଛିଡ଼ିଗଲା ଯେତେବେଳେ, ସେତେବେଳକୁ ସାଧୁ ରାସ୍ତାରେ ଗଡ଼ଗଡ଼ାଉଛି । ସେ ଅନ୍ୟମନସ୍କ ହୋଇ ସାଇକେଲ ନେଇ ନେଇ ଖାଲରେ ପଡ଼ିଯାଇ ସାଇକେଲ ଚିତ୍‌ପଟାଙ୍ଗ ହୋଇଗଲା, ସାଙ୍ଗେ ସାଙ୍ଗେ ସାଧୁ ମଧ୍ୟ । ତା ଧୋବ ଫରଫର ଜାମା ନାଳମାଟିରେ ବୁଡ଼ିଗଲା, ପିଛ ପାଖରୁ ଲୁଗା ଛିଡ଼ିଗଲା, ବାଁ ଆଣ୍ଠୁ ଖଣ୍ଡିଆ ହୋଇ ରକତ ବହିଲା, ହାତ କହୁଣୀ ଛେଚ ହୋଇଗଲା ।

ସାଧୁ ଧଡ଼ପଡ଼ ଉଠି ଠିଆ ହେଲା । ଆଗ ଚାରିଆଡ଼କୁ ଚାହିଁନେଲା—କେଉଁଠି କିଏ ଦେଖି ପକାଇଛି କି ନାହିଁ ।

ତା ଭାଗ୍ୟ ଖରାପ । ସେ ଦେଖିଲା, ଦଳେ ଟୋକା ଆଗରେ ଠିଆ ହୋଇ ହସି ହସି ଗଡ଼ିଯାଉଅଛନ୍ତି । ପଦେ ପଦେ କିଏ କେମିତି ଥଟ୍ଟା କରି ମଧ୍ୟ କହିଦେଉଛି—'ବାବାରେ ଆଲୋ ।' ତା ପରେ ହେଉଛି ହସବୃଷ୍ଟି ।

ପଡ଼ିବାଟା ସାଧୁକୁ ବାଧି ନ ଥିଲା; ମାତ୍ର ଶହେ ଥର ପଡ଼ିବାର କଷ୍ଟ ଦେଲା ପିଲାଙ୍କର ଏ ଥଟ୍ଟା ଟାପରା ।

ସେ ଉଠି ଆଗ ସାଇକେଲ ଟେକିଲା । ଆଗ ଚକ, ପଛ ଚକ ଟିକିଏ ପରୀକ୍ଷା କଲା । ଫ୍ରି ହୁଇଲ୍ ଦେଖିଲା । ପଛପଟ ଟେକି ଧରି ଥରେ ଦୁଇ ଥର ବୁଲାଇଲା । ତା ଉଦ୍ଦେଶ୍ୟ, ପିଲାଏ ଜାଣନ୍ତୁ,

ତା ପର ଓସ୍ତାଦ୍ କେବେ ପଡ଼ିବାର ନୁହେ—ସାଇକେଲ ଦୋଷରୁ ସେ ପଡ଼ୁଛି ।

ମାତ୍ର ଫଳ ହେଲା ଓଲଟା । ଗୋଟିଏ ପିଲା ହସି ହସି କହି-ଉଠିଲା, "ନା, ନା, ବାବୁ କଅଣ ପଡ଼ୁଛନ୍ତି ? ତାଙ୍କ ଭଲଆ ବାବୁ କଅଣ କେବେ ପଡ଼ନ୍ତି ?"

ତା ସାଥୀ ହାତରେ ଗୋଟାଏ ତାଳି ମାରି କହିଉଠିଲା—'ଧୋ' ।

ସେଇଠୁ ବହିଲା ହସର ସୁଅ ।

ସାଧୁ ଆଉ ସମ୍ଭାଳିପାରିଲା ନାହିଁ । ବହୁ କଷ୍ଟରେ ସାଇକେଲରେ ଉଠିଲା । ପବନଜୋରରେ ସାଇକେଲ ଛୁଟାଇଦେଲା ଘରଆଡ଼କୁ ।

ବାବାଜୀ ହେବାର ଆଉ ହୋଇଲା ।

—ଘର—

ସାଧୁର ବିଶ୍ୱାସ ଦୃଢ଼ ହୋଇଗଲା—ବାସ୍ତବିକ୍ କେମ୍ପୀଟା ଖରାପ, ଅଲକ୍ଷଣୀ । ତା ବାପା ପୁରୁଣା ସାଇକେଲ ଦେଇଥିଲେ ବୋଲି ସିନା ସେ ଆଜି ଏମିତି ଅପମାନ ପାଇଲା । ନା, ଏହାର ଉପଯୁକ୍ତ ପ୍ରତିଶୋଧ ନେବା ଦରକାର । ଯାଉ ସେ ଏ ଘରୁ ବାହାରି ।

ସାଧୁ ଆସି ନିର୍ଦ୍ଧୁମ ଖରାବେଳଟାରେ ଘରେ ପହଞ୍ଚିଲା । ତା ଗୋଡ ହାତ ଖଣ୍ଡିଆ; ଲୁଗାପଟା ଅସନା- ଧୂଳି ଜରଜର ।

ସାଇକେଲ ଖଣ୍ଡକ ବାଣ୍ଡରେ ପକାଇ ଦେଇ ସେ ସିଧା ଘରଭିତରକୁ ପଶିଗଲା । ରାଗରେ ତାହାର ସର୍ବାଙ୍ଗ ଜଳୁଛି ।

କେମ୍ପୀ ବସି ପାନ ସଜାଉଥିଲା । କିଛି କୁହା ନାହିଁ, ବୋଲା ନାହିଁ; ସାଧୁ ତା ମଝି ପିଠିରେ ମାଇଲା ଦୁଇ ଗୋଇଠା ।

"ବଜାତ୍, ବାହାର ଏ ଘରୁ, ଅଲକ୍ଷଣି !"

କେମ୍ପୀ ଚମକିଉଠିଲା । ସେ ପ୍ରଥମେ ତା ଆଖିକୁ ଆଦୌ ବିଶ୍ୱାସ କରିପାରିଲା ନାହିଁ । ତା ପରେ ଯେତେବେଳେ ପୁଣି ଦୁଇ ଗୋଇଠା ବସିଗଲା, ସେ ଜୋରେ କରି କାନ୍ଦିଉଠିଲା; ଶୀବନ ବିକଳରେ କବାଟ କୋଣରେ ଲୁଚିଗଲା ।

ସାଧୁ ସେ ଦିନ ଘରେ ଖାଇଲା ନାହିଁ ।

କେମ୍ପୀର ମନ ନିତାନ୍ତ ଖରାପ ହୋଇଗଲା । ସେ ସବୁବେଳେ ଭାବିଲା, କପରି ବାପଘରକୁ ପଳାଇଯିବ ।

ମାତ୍ର ଯିବ କପରି ? ତାଙ୍କ ଘରୁ ତ କେହି ଲୋକ ଆସୁ ନାହାନ୍ତି । ତଥାପି ସେ ଯିବ, ଏକା ପଳାଇବ । ଆଉ ଏ ଘରେ ରହିବ ନାହିଁ । ଆଜଯାଏ ଗାଳିମନ୍ଦ ଖାଇ ପଡ଼ି ରହିଥିଲା । ଆଜି ମାଡ଼ ଖାଇଲା, ପୁଣି ଯାହା ପାଇଁ ପଡ଼ି ରହିଥିଲା, ତାରି ହାତରୁ । ଆଉ ଏ ଘରେ ସେ ରହିବ କାହିଁକି ?

କ୍ରମେ ସନ୍ଧ୍ୟା ହେଲା । ସାଧୁ ମନରେ ଟିକିଏ ବି ପରିବର୍ତ୍ତନ ଆସିଗଲା । ଖରାବେଳ କଥା ଭାବି ତାକୁ ବଡ଼ ସରମ ଲାଗିଲା । ଦିନଯାକ ସେ ଆଉ କେମ୍ପୀକୁ ଦେଖା ଦେଇ ନାହିଁ ।

ନା, ତାର ବଡ଼ ଅନ୍ୟାୟ ହୋଇଛି । କେମ୍ପୀକୁ ଯାଇ ବୋଧଶୋଧ କରିବା ଦରକାର ।

ବନମାଳା ସାଧୁ ପଦାରେ ପଦାରେ କଟାଇ ସନ୍ଧ୍ୟା ପରେ ଘରକୁ ଆସିଲା । ଘର ଅନ୍ଧାର; ସେ ଜାଣିପାରିଲା, କେମ୍ପୀ ବସି କାନ୍ଦୁଛି । ଏ ପର୍ଯ୍ୟନ୍ତ ଆଲୁଅ ଲଗି ନାହିଁ ।

ସେ ଦୁଆରମୁହଁରେ ଠିଆ ହୋଇ କଅଣ କହି ଆସୁଥିଲା; କେମ୍ପୀ ଗର୍ଜି ଉଠିଲା ।

ସାଧୁର ନରମ ଭାବ ପୂରି କଟିଗଲା; କିନ୍ତୁ ସେ ଆଉ ମାଡ଼ ଦେଲା ନାହିଁ । ପାଟି କରି କହିଲା, "ତୁ ଏ ଘରୁ ବାହାର; ମରଣ ହେଉ ନାହିଁ ।"

କେମ୍ପୀ ସମାନ ସ୍ୱରରେ ଉତ୍ତର ଦେଲା, "ହଁ, ଯାଉଛି ମରିବି । ଏ ଘରେ ଆଉ କଦାପି ରହିବି ନାହିଁ ।"

କେମ୍ପୀ ଉଠି ବାଡ଼ ଆଡ଼କୁ ଚାଲିଗଲା, ସାଧୁ ଟାଣ ଧରି ସେଠାରେ ଠିଆ ହୋଇଥାଏ । ନ ହେଲେ ନିଜ ସ୍ୱାମୀ ପଣିଆରେ ଆଞ୍ଚ ଲାଗିବ ଯେ ।

ବାଡ଼ କୂଅରେ ଗୋଟିଏ ଦଡ଼ଭୁସ୍ ହୋଇ ପଡ଼ିବା ଶବ୍ଦ ଶୁଣାଗଲା । ସାଧୁର ଟାଣ ଭାଙ୍ଗିଗଲା । ସେ ବାଡ଼ଆଡ଼କୁ ଦଉଡ଼ିଯାଇ ପାଟି କରିଉଠିଲା ।

ତା ବାପା ଦାଣ୍ଡ ପଟୁ ଦଉଡ଼ି ଆସିଲେ । ସାହି ଲୋକେ ଜମା ହେଲେ, ଆଲୁଅ ଲାଗିଲା ।

କେମ୍ପୀ କୂଅକୁ ଡେଇଁ ପଡ଼ିଅଛି ଶୁଣି ସମସ୍ତେ କୂଅମୂଳକୁ ଦଉଡ଼ିଲେ । କୂଅ ବୁଡ଼ାଳିକୁ ଡାକିବାକୁ କିଏ ଗଲା, କିଏ ପାଟି ତୁଣ୍ଡ କରି ସାହି କମ୍ପାଇଦେଲା, କିଏ ମାମଲତକାରୀ ଦେଖାଇଲା ।

ମୁହୂର୍ତ୍ତକ ମଧ୍ୟରେ ସେଠାରେ ଯେପରି ହାଟ ବସିଗଲା । ସାହି ଯାକର ସ୍ତ୍ରୀ ପୁରୁଷ, ବୁଢ଼ା ବାଳକ ସମସ୍ତେ ଆସି ରୁଣ୍ଡ ହୋଇଗଲେ ।

ତିନି ଦିନ ପରେ ଜଣାଗଲା, କେମିତି ଯାଇ ବାପଘରେ ଉଠିଛି ବଜାରର ସମସ୍ତଙ୍କ ଆଖିରେ ଧୂଳି ଦେଇ ।

ମଧୁ ସାହୁଙ୍କ ରାଗ ଚାନ୍ଦି ଉପରକୁ ଉଠିଗଲା—"ହଁ, ମୋ ବୋହୂ ସେଠି ରହିବ ? ମୁଁ କଟକ ସହରରେ ମୁଣ୍ଡ ଟେକି ବାଟ ଚାଲିପାରିବି ତ ?"

ବଜାରର ମାମଲତକାରମାନେ ଆସି ବସିଲେ । ବହୁ ଆଲୋଚନା ହେଲା । 'ହଁ ସତ କଥା, ଆମ ବଜାରର ବୋହୂ ଉପରେ ଗୁଣ ସାହୁର କି ଅଧିକାର ? ଅଲବତ୍ ବୋହୂକୁ ସେ ଫେରାଇଦେଇ ଯିବ । ଆମେ ମକଦ୍ଦମା କରିବା । ଫଉଜଦାରି କରି, ଜବରଦସ୍ତି କରି ବୋହୂକୁ ନେଇଆସିବା ।'

ତେଣେ ଗୁଣ ସାହୁ ଝିଅକୁ ପାଇ ମହା ଖୁସି । ଖଲିଫା ବଜାରବାଲାଙ୍କୁ ଡାକି ବିଚାର କରାଇଲା । 'ଆମ ବଜାର ଝିଅକୁ ନେଇ ଅପମାନ ଦେବେ, ମାଡ଼ ମାରିବେ । ନା, କଦାପି ଆମ ଝିଅକୁ ଆମେ ଛାଡ଼ିବୁ ନାହିଁ, ସୃଷ୍ଟି ପ୍ରଳୟ ହୋଇଗଲେ ବି ନୁହେ ।'

ଫିରିଙ୍ଗି ବଜାରବାଲା ବୋହୂକୁ ଆଣିବାପାଇଁ ଆଉ ଖଲିଫା ବଜାର ଲୋକେ ଝିଅକୁ ନ ଛାଡ଼ିବାପାଇଁ ଟାଣ ହୋଇ ରହିଲେ ।

କଚେରୀରେ ମକଦ୍ଦମା ଚାଲିଲା, ଏଣେ ଜୋର ଜବରଦସ୍ତି ମଧ୍ୟ ଲାଗିଗଲା । ଫୌଜଦାରି ହେଲା । ଦିନକୁ ଦିନ ରାଗ ବଢ଼ିଲା ।

ଲୋକେ ସର୍ବସ୍ୱାନ୍ତ ହେଲେ । କେତେ ଥର ଘର ପୋଡ଼ିଲା, କେତେ ଜଣଙ୍କର ମୁଣ୍ଡ ଫାଟିଲା, କେତେ ଜେଲ ଗଲେ । ତଥାପି ବଜାରର ଠେକ ରଖିବା ପାଇଁ ଦୁଇ ସାହିର ଲୋକେ ପାହାଡ଼ ପରି ଅଟଳ ରହିଲେ ।

—ଛଅ—

ବର୍ଷେ ଗଲା, ଦୁଇ ବର୍ଷ ଗଲା, କ୍ରମେ ତୃତୀୟ ବର୍ଷ ଆସି ଶେଷ ହେଲା ।

କେମ୍ପୀ ମନ ନିତାନ୍ତ ଉଚ୍ଛନ୍ନ ହେଲା । ସେ ଚଳାଇ ଆସି ସେ ମସ୍ତ ବଡ଼ ଭୁଲ କରିଛି, ଏହା ମର୍ମେ ମର୍ମେ ଅନୁଭବ କଲା । ଥରେ ମାତ୍ର ସାଧୁ ସଙ୍ଗେ ଦେଖା ହୁଅନ୍ତା କି, ସେ ଗୋଡ଼ତଳେ ପଡ଼ି ଦୋଷ ମାଗିନିଅନ୍ତା ।

ଶ୍ୱଶୁରଘରକୁ ଯିବାପାଇଁ ତା ମନ ଅଥୟ ହେଲା; ମାତ୍ର ବାଟ ବନ୍ଦ । ଏ କଥା ମୁହଁରେ ଧରି ହେବ ନାହିଁ । ବାପା ଠେଙ୍ଗା ଧରି ଗୋଡ଼ାଇବେ । ବଜାର ଲୋକଙ୍କ କଥା ତ କହିଲେ ନ ସରେ । ସାଧୁକୁ ଦେଖିଲେ ବୋଧହୁଏ ତା ରକ୍ତ ଚିତା ପିଇବେ । ତାରି ଲାଗି ତିନି ବର୍ଷ ହେଲା ଏତେ ଗଣ୍ଡଗୋଳ, ସେ ପୁଣି କେଉଁ ମୁହଁରେ ଫିରିଙ୍ଗି ବଜାରକୁ ଯିବ ବୋଲି କହିବ ?

ଏଣେ ସାଧୁର ମଧ୍ୟ ସେହି ଅବସ୍ଥା । ତାକୁ ଯେ ସେ ଦିନ କାହିଁକି ଦୁର୍ବୁଦ୍ଧି ଘୋଟିଲା, ସେ କେମ୍ପୀକୁ ଗୋଇଠା ମାଇଲା— ଯେତେ ଭାବିଲେ ମଧ୍ୟ ଏ ପର୍ଯ୍ୟନ୍ତ ବୁଝିପାରିଲା ନାହିଁ । ତାକୁ ସେତେବେଳେ ଲକ୍ଷ୍ମୀ ଛାଡ଼ିଥିଲା ନା କଅଣ ? ଏଇଲାଗେ ମୁହୂର୍ତ୍ତେ ମାତ୍ର ଦେଖା ମିଳନ୍ତା କି, ସେ କେମ୍ପୀର ହାତ ଧରି କ୍ଷମା ମାଗି-ନିଅନ୍ତା । ତା ପାଇଁ ଯେ ସେ କେତେ ବ୍ୟସ୍ତ, ସେ କଥା ଜଣାଇ

ବିଅନ୍ତା । କିନ୍ତୁ ସେ ବାଟରେ ଯେ ସାତପରସ୍ତ ନାଗଫେଣିଆ କଣ୍ଟା ପଡ଼ିଛି !

ମଧୁ ସାହୁ ପୁଅକୁ ଆଉ ଗୋଟାଏ ବିବାହ ଦେବା ପାଇଁ ବହୁତ ଲଗାଇଲେଣି । କେତେ ବୁଝାଇଲେ, କେତେ ଧମକ ଚମକ ଦେଲେ, ଘରୁ ଛଡ଼ିଦେବେ ବୋଲି କହିଲେ । ଏକା ବାପା ନୁହନ୍ତି, ବଜାରର ସମସ୍ତେ ଆସି ତାକୁ ବ୍ୟସ୍ତ କଲେ । ମାତ୍ର ସାଧୁ ଅଟଳ, ସେ ଆଉ ବିବାହ ହେବ ନାହିଁ ।

× × × ×

ଏହା ଭିତରେ ଗୋଟିଏ କୌଶଳ ଠିକ୍ ହୋଇଯାଇଛି ।

ଫିରିଙ୍ଗି ବଜାରର ମାହାରାଣୀ ଝୋଲିଫା ବଜାରର ପାଇଖାନା ସଫା କରେ । ତାକୁ ଦୂତ୍ତ କରି ପାଇ କେମୀ ଆଉ ସାଧୁ ନିଜ ନିଜ ଭିତରେ ଛିଡ଼ି ଯାଇଥିବା ସୂତାଖିଅକୁ ପୁଣି ଗଅଣ୍ଠାଇ ନେଉଛନ୍ତି ।

ଉଭୟେ ପରସ୍ପରକୁ ମନ କଥା ଦୂତ୍ତ ଜରିଆରେ ଜଣାଇ ସବୁ ଠିକ୍ କରିନେଲେ; ଆଉ ଦୁଇ ବାପାଙ୍କ ବାଧା କି ଦୁଇ ବଜାର ଲୋକଙ୍କ ଟାଣ ବାଟ ବନ୍ଦ କରିପାରିଲା ନାହିଁ ।

ସେ ଦିନ ବାଲିଯାତ । ଗଡ଼ଗଡ଼ିଆ ଘାଟରେ ସମସ୍ତେ ରୁଣ୍ଡ । ସାଧୁ ପୂର୍ବ କଥା ମୁତାବକ ଘରୁ ଟଙ୍କା କଉଡ଼ି କିଛି ଧରି ଯାତକୁ ଯାଇଥିଲା । କେମୀ ମଧ୍ୟ ଅପ୍ରସ୍ତୁତ ହୋଇ ଆସି ନ ଥିଲା । ସେଠାରୁ ଉଭୟେ ବଜାର ଲୋକଙ୍କ ଆଖିରେ ବାଲି ପକାଇ ଅଦୃଶ୍ୟ ହୋଇଗଲେ ।

ତେଣେ ସାଧୁକୁ ଖୋଜାଗଲା । ଏଣେ କେମ୍ପୀକୁ ନ ପାଇ ଯାତରେ, ଘରେ, ସାହିରେ, କ୍ରମେ ବଜାରରେ ସମସ୍ତେ ଅଥୟ ହୋଇଉଠିଲେ, ଲୁଚିଆଡ଼େ କଥାଟା ରାଷ୍ଟ୍ର ହୋଇଗଲା ।

ପରେ ଖବର ମିଳିଲା, ସାଧୁ ଆଉ କେମ୍ପୀ ଖଡ଼ଗପୁରରେ । ସାଧୁ ସେଠାରେ ଗୋଟାଏ ପାନ ଦୋକାନ ଖୋଲିଅଛି । ଦୁଇ ପ୍ରାଣୀ ମହାଆନନ୍ଦରେ ଘର ଦ୍ୱାର କରି ରହିଅଛନ୍ତି ।

× × × ×

ଦୁଇ ବଜାରରୁ ଯେଉଁମାନେ ଫେରାର ହୋଇଥିଲେ, ସମସ୍ତେ ଧରାପଡ଼ିଲେଣି । କଚେରୀରେ ମକଦ୍ଦମା ସରଗରମରେ ଚାଲିଛି । ପ୍ରାୟ ପଚାଶ ଜଣ ଟୋକା ବୁଢ଼ା ହାତକଡ଼ି ପଡ଼ି ନିତି ହାଜତରୁ ଆସୁଛନ୍ତି ।

ଆଜି ମକଦ୍ଦମା ଷଗୁରବେଳେ ସେମାନେ କଚେରୀରେ ଶୁଣିଲେ, ସାଧୁ ଆଉ କେମ୍ପୀ ଦୁହେଁ ପୁଣି ଏକାଠି ହେଲେଣି ।

ଦୁଇ ଦଳଙ୍କ ମୁହଁରେ ଆନନ୍ଦର ଢେଉ ଖେଳିଗଲା ।

ଯୋଡ଼ି ଯୋଡ଼ି ହୋଇ ହାତକଡ଼ି ପଡ଼ି କଚେରୀରୁ ହାଜତକୁ ଗଲାବେଳେ ଫିରିଙ୍ଗି ବଜାରବାଲା କହିଲେ—ହାମ୍ ବଜାରର ଟେକ ରହିଛି । ହାମ୍ ବଜାର ପୁଅ ଖଲିଫା ବଜାର ଝିଅକୁ ନେଇ ଯାଇପାରିଛି । ଇନ୍‌କିଲାବ୍ ଜିନ୍ଦାବାଦ୍ ।

ଖଲିଫା ବଜାର ଲୋକେ ହାତକଡ଼ିକୁ ଝମର୍ କରି ବଜାଇ ଦେଇ କହିଉଠିଲେ—ହାମ୍ ବଜାର ଝିଅ ଫିରିଙ୍ଗି ବଜାର ପୁଅକୁ ହାତ କରିପାରିଛି । ହାମ୍ ବଜାର କି ଜେ ।

———

କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କ ଦ୍ୱାରା ମୁଦ୍ରିତ

